# କୁନ୍ତଳା କୁମାରୀ କବିତାଗୁଚ୍ଛ

ଲେଖିକା :

ସ୍ୱର୍ଗତ କୁନ୍ତଳା କୁମାରୀ ସାବତ

ସମ୍ପାଦନା :

ଶ୍ରୀ ଅନନ୍ତ ମିଶ୍ର



ଆର୍ଯ୍ୟ-ଷ୍ଟୁଡେଣ୍ଟସ୍-ଷ୍ଟୋର

କୁନ୍ତଳା କୁମାରୀ କବିତାଗୁଚ୍ଛ

ପ୍ରକାଶକ :
ଶ୍ରୀ ଅନନ୍ତ ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
କଟକ-୭୫୩୦୦୨

ନୂତନ ମୁଦ୍ରଣ—୧୯୮୨

ପ୍ରଚ୍ଛଦ :
ଶ୍ରୀ ଅସୀତ ମୁଖାର୍ଜୀ

ମୂଲ୍ୟ : ଛ'ଅ ଟଙ୍କା

**Kuntala Kumari Kabita Guchha**
( Collection of Poetay )
Late Kuntala Kumari Sabat

Publisher
**Anant Misra**
Cuttack Students' Store
Cuttack-2

New Edition—1982

Price : Rs. 6-00

# ତରୁଣର ଆବାହନ

( ୧ )

ନିରାଶାର ଗିର ନ ଘୋଷୁ ରସନା,
ନ ବାଜୁ ତାହା ଏ ଜାତି ଶ୍ରବଣରେ,
ଦେଢ଼କୋଟି ପ୍ରାଣ ନବ ଜାଗରଣେ
ଘଅ ଉଠିବାକୁ ନବ ସ୍ପନ୍ଦନରେ ।

କର୍ମା ଧୂଳିତଳେ ରଚି ମୃତ୍ୟୁ ଶେଯ
ହରାଇବେ ସର୍ବେ ନର ବୀର୍ଯ୍ୟ ତେଜ,

ଅନନ୍ତ ମରଣ ଏ ଜାତି କପାଳେ
ଲେଖିନାହିଁ ବିଧାତ୍ରୀ,
ଉଠିବେ ଉଠିବେ ଦେଢ଼କୋଟି ଆତ୍ମା
ଅମୃତ ପଥ ଯାତ୍ରୀ ।

କିଏ କହେ ନାହିଁ ଆମର ସାହସ,
କିଏ କହେ ଆମେ ଅଜ୍ଞାନ ଅଳସ ?

କିଏ କହେ ମୃତ ଓଡ଼ିଆର ପ୍ରାଣ,
ଚିର ଅବସାନ ତା ଗୌରବ, ଠାଣ ?
ପରପଦାହତ, ଦୁର୍ବଳ ଭୀରୁ, ନିର୍ବୀର୍ଯ୍ୟଙ୍କେ ମି[illegible] ।

ପଡ଼ିଅଛି ଭାଙ୍ଗି ଦୁର୍ଗ ବାରବାଟୀ,
କୋଣାର୍କ ଶିଖର ଚୁମ୍ବି ଅଛି ମାଟି;

ମାଳଚନ୍ଦ୍ରବାନା ଲେଖିଛି ଧୂଳିରେ,
ପୋତି ଦେଇଅଛି ଚିଲିକା ବାଲିରେ;

ଆଜ ନ ନାଚଇ ଓଡ଼ିଆ ବୋଇତ
ନୀରଧି ତରଙ୍ଗ ରଙ୍ଗେ ଆଲିଙ୍ଗିତ,
ନୀରବ ଉତ୍କଳ ସାରଳା ସଙ୍ଗୀତ

ହଜିଅଛି ଚିର ଏ ଜାତି ବିଭବ,
ଉପାନ୍ତଲେ ଲୀନ ଓଡ଼ିଆ ଗରବ;

ଛିନ୍ନ ଭିନ୍ନ ଅଙ୍ଗେ, ମରଣ ଉତ୍ସଙ୍ଗେ
ନବଜାଗରଣ ଆଉ କି ସମ୍ଭବ ?

ଦିଅ ମରିବାକୁ ଶାନ୍ତ ସୁଧୀରେ
ଆଉ ନ ଉଠିବ ଏ ଜାତି ମହୀରେ
ନ କହ ନ କହ ଏ କୈତବ-ବାଣୀ !

ଜାତି କଣ୍ଠପୁଟେ, କ୍ଷୀଣ ପ୍ରାଣତାର
କରିବ ବା ଶୋକେ ଆର୍ତ୍ତ ହାହାକାର,

ସ୍ମରି ନିଜ ଦୁଃଖ ଦୁର୍ଦ୍ଦଶା ହୀନତା
ନିଜନେତ୍ରେ ତାର ବହିବ ମ୍ଳାନତା,

କହିଁ ଅକାରଣେ ଦେଶମାତୃ ପ୍ରାଣେ
କ୍ଳେଶ ରେଖା ଟାଣି ଲଭିବ କଷଣ,
ଉଠ ଉଠ ସେହ୍ବ ଉପେକ୍ଷି ମରଣ ।

ହୃଦୟ ସ୍ପନ୍ଦନ ହଜିନାହିଁ ତାର,
ଶିରାରେ ଶିରାରେ ବହେ ପ୍ରାଣଧାର,

କମ୍ପା କରୁଅଛି ଦୁର୍ଭିକ୍ଷ, ବନ୍ୟା, ବ୍ୟାଧି ସାଶୁଅଛି ସର୍ବ,
ଦୈନ୍ୟ ହରୁଛି ମଣିଷ ପଣିଆ, ମଥା ଟେକିବାର ଗର୍ବ ?
ନ କର୍ମ ନ କର୍ତ୍ତ ଆଉ,

ଜାଗିଲେଣି ବୀର ତରୁଣ ସନ୍ତାନ
ଘୁଞ୍ଚାଇବେ ମିଳି ମାତୃ ଅପମାନ;

କେ କେତେ ପ୍ରେରଣା ପ୍ରାଣେ ଲଭି ଶୁଭ
ଧରି ହୃଦେ ଦୃଢ଼ ବିଶ୍ୱାସ ଧ୍ରୁବ,

ଜାଗିଛନ୍ତି ନବକର୍ମେ,
ନିରାଶାର ବ୍ୟଥା ନ ବାଜୁ ମର୍ମେ,

ଦେଶ ନବପ୍ରାଣ ପାଉ ।

କମ୍ପା ବାଧା ବିଘ୍ନ ପାଷାଣ ଭୀଷଣ
ସ୍ଥାପିବ ଚରଣ ପ୍ରାନ୍ତେ ଅକାରଣ ?

ହେଉ ଅଗ୍ରସର ନବ ଆନନ୍ଦରେ
ତରୁଣ ବାହିନୀ ନବ ଜୀବନରେ,

ମୃତ୍ୟୁ-ତମସା ଠେଲି ଯାତ୍ରାଲୋକେ
ଝୁଲିଛନ୍ତି ସେନା ସାହସ ପୁଲକେ,

ଝୁଲିଛନ୍ତି ବିଶ୍ୱଜୟୀ,

ନବ ଯଉବନ ଉନ୍ମାଦନାରେ ଟଳିବେ ପର୍ବତ ନଈ ।

ହେଉ କୋଟି ଜନ ଅଜେୟ ଉଦ୍ୟମ
ଲଭିବ ସମ୍ପଦ, ଅଭୂତ କରମ,

ସାଧିବ ଏ ମହାମନ୍ତ୍ରରେ; ହେଳାରେ
ନବଳ ତରୁଣ ପ୍ରାଣ ଅବଜ୍ଞାରେ
ସେ ତରୁଣ ହୃଦ ପ୍ରତି ରକ୍ତବିନ୍ଦୁ
ମିଶି ହରିବବ ମହାଶକ୍ତି ସିନ୍ଧୁ ।
କୋଟି କୃଷ୍ଣାର୍ଜ୍ଜୁନ, ସୁଭଦ୍ରା ସାବିତ୍ରୀ
ଜନମିବେ ଦିନେ ଉତ୍କଳ ପବିତ୍ରୀ;
ଉତ୍କଳ ସମ୍ବଳ ସେହିମାନେ ପ୍ରିୟା,
ହେଉନ୍ତୁ ଅଳପ, ଅଗଣା ଅତିହ୍ଲା ।

( ୨ )

ଦିନେ ରଣ ପ୍ରାଙ୍ଗଣରେ ମୃତ୍ୟୁ ନର୍ତ୍ତନେ
ବାଜଛି ମୁରଲୀ ତାନେ
ଗୀତାର ତତ୍ତ୍ୱ, ଯୋଗ ମହତ୍ତ୍ୱ, ତରୁଣ ସାରଥି ପ୍ରାଣେ ।
ମହାବୋଧି ସତ୍ତ୍ୱମୂଳେ,
ତରୁଣ ତପସ୍ୱୀ ମହାଜ୍ଞାନ ଲଭି
ଉଦ୍ଧାରିଲେ ଜୀବକୁଳେ ।
ପର୍ବତ କନ୍ଦରେ ତରୁଣ ଅନ୍ତରେ
ଜାଗିଥିଲା ଯେଉଁ ବାଣୀ,
ମଥାନତ କରି ଶୁଣିଲା ମେଦିନୀ,
ଉଦ୍ଧରିଲେ କୋଟି ପ୍ରାଣୀ ।
କୁରୁ କୃଶ କାଷ୍ଠେ ବହିଥିଲା ଦିନେ ତରୁଣର ରକ୍ତଧାର,
ନମସ୍କରିଲା ତହିଁ ଅର୍ଦ୍ଧ ଅବନୀ, ପୂଜିଲା ସେ ପାରାବାର,
ତରୁଣ ସେ ନାରାୟଣ,

ଯୁଗେ ଯୁଗେ ଅବନୀର ମର୍ମତଳେ
ପ୍ରେମ କରେ ବିଚରଣ ।
ଉଦ୍ଧାରିବ ସେହି ଏ ଘନ ଜଙ୍ଗଲ
ତପୋଭୂମି ଦିନେ ହେବ ଉଜ୍ଜ୍ୱଳ ।
ଅନଙ୍ଗ ସଯାତି ଆସିବେ ତ ଫେରି,
ବାଜିବ ଓଡ଼ିଆ ଜୟ ତୂରୀ ଭେରୀ ।
ଜାଗିଅଛି ଆଜ ତରୁଣ କେଶରୀ
ନୀଳାଚଳ ପୁଣ୍ୟ ତୂଳେ,
ବନ୍ଦନା ଗୀତି ଗାଉଅଛି ଜଳ ତରଙ୍ଗ
ସାଗର କୂଳେ ।
ଫୁଟିଅଛି ଫୁଲ ନାଗେଶ୍ୱର ବନେ,
ଶୁଭେ ଶଙ୍ଖ ସ୍ୱନ ଏକାମ୍ର କାନନେ
ଗୁନ୍ଥି ଶତଦୋପୂଳା ସଜାଉଛି ମାଳା
ଲଳିତ ନଳିନୀ-ଦଳ ଦାମ ଦେନ
ପୂଜିବେ ମନ୍ଦାରେ ମଞ୍ଜୁ ପାଦ ବେନି,
ଆସିବେ ଓହ୍ଲାଇ ସ୍ୱର୍ଗ ସିମନ୍ତିନୀ,
ତରୁଣର ପ୍ରାଣେ ନବ ସଞ୍ଜୀବନୀ
ପୂତ ନୀର ସିଞ୍ଚି ମୋହିବେ ମୋହିନୀ
ଉତ୍କଳର ପ୍ରାଣାସନେ
ଅଭିଷେକ ଆଜ ତରୁଣ ରାଜାର
ପ୍ରେମ-ହେମ ଆଭରଣେ ।

( ୩ )

ହେଲଣି ହେଲଣି ନବ ସୂର୍ଯ୍ୟୋଦୟ,
ଆଉ କି ଲଜ୍ଜା ଆଉ କି ଭୟ ।
ନବ ଯଉବନ ଶିରୀ ସମ୍ପଦେ ହସଇ ପ୍ରକୃତି ରାଣୀ,
ନ କହ ନ କହ ଆଜି କର୍ଣ୍ଣମୂଳେ
ନିରାଶା ଘୋଷଣ ବାଣୀ ।
ଚିରରାତି ନାହିଁ କପାଳେ କାହାର,
ଉଠ ଦେଢ଼କୋଟି ପ୍ରାଣୀ !
ଦେଖ ତବ ଦ୍ୱାରେ ତରୁଣର ବେଶେ
ଉଭା ରବି ପ୍ରଭା ଝଲ ଯେ କିଏ ସେ ?
ଆଖି କୋଣେ ତା'ର କି ଜ୍ୟୋତି ଚୁରିର,
ଅଧରେ ମୋହନ ଆଶା ମୃତଗିର ।
ଦେଢ଼କୋଟି ଭାଇ ଉଠିବେ, ଓଡ଼ିଆ-
ପ୍ରାଣ ନ ମରିବ ଚିର
ନିଅ ବରି ତବ ତରୁଣ ତପସ୍ୱୀ ତବ ଅରିନ୍ଦମ ବୀର ।
ରଚ ରମ୍ୟମାଳ, ତୁଳସୀ, ମଲ୍ଲିକା
ଦିଅ ଧାନ, ଦୁବ, ଚନ୍ଦନ ଟୀକା,
ସଜାଡ଼ ହୃଦୟ-ପୁଣ୍ୟ-ବେଦିକା ।
ନିଅ ବରି ତବ ତରୁଣ ତପସ୍ୱୀ ତବ ଅରିନ୍ଦମ ବୀର,
ଦେଢ଼କୋଟି ଭାଇ ଉଠ ହେ ଓଡ଼ିଆ;
କି ପାଇଁ ମରିବ ଚିର ?

—X—

# ନାରୀ ଶକ୍ତି

ଷୋଳ କୋଟି ପ୍ରାଣେ ଆସିଛି ଆହ୍ୱାନ
ଦୂର ମହାକାଶୁଁ ଆଜ,
ଷୋଳ କୋଟି ନାରୀ ଉଠିବେ ଭାରତେ
କରୁଣା କଲ୍ୟାଣେ ସାଜ ।

କେତେଦିନ ଆଉ କହ କେତେଦିନ
ପୁଣ୍ୟ ଆର୍ଯ୍ୟଭୂମି ହୋଇଥିବ ହୀନ ?

ହେର, ଅବସାନ ଆଜ ଦୀର୍ଘ ରାତି,
ଫୁଟେ ପ୍ରାଚୀ ମୂଳେ ନବାରୁଣ ଭାତି,
ଶତ ଶତ ପୂତ ପଦ୍ମିନୀ ପଦୁର ନୂପୁର ଉଠଇ ବାଜ;
ଉଠିବେ ଭାରତ ଶକତି ସହିତ
ଜାଗିବେ ଭାରତେ ଈଶ୍ୱରୀ ଭାରତୀ,
ଗୃହେଁ ଗୃହେଁ ନେଇ ମେଲଇରେ ଜଡ଼
ମୃତ ମୋହ ନିଦ୍ରା ଭାଜ ।

ଭାରତର ନାରୀ ଭାରତ ସମ୍ପଦ
ପୂଜ ଦେବୀ ଜ୍ଞାନେ ପଦ-କୋକନଦ,
ଭଗିନୀ, ଜନନୀ, ଜାୟା, ଦୁହିତା ମୁଖ
ଉଜ୍ଜ୍ୱଳ ଅମର୍ତ୍ତ୍ୟ ଆନନ୍ଦ ମୟୂଖ,

ସେ କରଣେ, ତବ ଅନ୍ତର ଅନ୍ଧାର
ଘୁଞ୍ଚିବ ଜଞ୍ଜାଳ ଜ୍ୱାଳା ପାପଘୋର,

ସଞ୍ଚରିବ ଭୁଜଦଣ୍ଡେ ଚଣ୍ଡ-ଶକ୍ତି
ପ୍ରଫୁଲ୍ଲ ମାନସ ତାମରସ ଗନ୍ଧେ ସ୍ଫୁରିବ ଅମୃତ ଭକ୍ତି ।

ବସୁନ୍ଧରା ତଳେ ଭାରତରମଣୀ ନୁହେଁ ହୀନ ନୁହେଁ ଦୀନ,
ଅମର କୀରତି କୋଟି ଯୁଗେ କେବେଁ
ଜଗତୁଁ ନୋହିବ ଲୀନ;

ଯେତେଦିନ ବହୁଥିବ ଗଙ୍ଗାଧାର
ହିମଗିରିଶିର ଶୋଭିବ ତୁଷାର,

ଆର୍ଯ୍ୟ ରମଣୀର କୀରତି କାହାଣୀ
ମୃଦୁଳ ମଳୟ କରିବ ପ୍ରଚାର ।

ପୂତ ରାଜସ୍ଥାନେ ରାଜଓ୍ୱାଡ଼ା ବନେ,
କଳିଙ୍ଗେ କର୍ଣ୍ଣାଟେ, ବଦ୍ରି ବୃନ୍ଦାବନେ,

ମିଥିଳା, ବିଦର୍ଭ, ବଙ୍ଗେ, ବିନ୍ଧ୍ୟାଚଳେ,
ଆର୍ଯ୍ୟ ମହିଳାର ମହିମା ଉଜ୍ଜ୍ୱଳେ ।

ଆଜ ସୁଦ୍ଧା ସତୀ, ସାବିତ୍ରୀ, ପଦ୍ମିନୀ
ସଂଯୁକ୍ତା, ସୁଭଦ୍ରା, ଜାନକୀ, ରୁକ୍ମିଣୀ,

ଜୀବିତ ଭାରତ ଜୀର୍ଣ୍ଣ କଙ୍କାଳରେ,
ଆର୍ଯ୍ୟମାତା ମରିନାହାନ୍ତି ପ୍ରାଣରେ,

ଗୋପନେ ଗୋପନେ କ୍ଷୀଣ ଶିରାମଧ୍ୟେ
ବହେ ତାର ପ୍ରାଣଧାର,
ଏମନକା ପାଷାଣୀ ସୂତା ଶକତରେ
ଘୁଞ୍ଚିବ ତା' ହାହାକାର ।

ଲଜେ ନତ ଆଉ ନୋହିବ ତା ମଥା
ହରିବ ଦୁହିତା ଜନନୀର ବ୍ୟଥା,

ତେତିଶ କୋଟି ନ ସ୍ତ୍ରୀ ଉଠିବେ ଆନନ୍ଦେ
'ବନ୍ଦେ ମାତରଂ' ଗାଇ,
ଭାରତ ତୀର୍ଥର ମହାମନ୍ତ୍ର ଦୀକ୍ଷା
ନେବେ ସେ ଭଗିନୀ ଭାଇ;

ଭୁଲନାହିଁ କେବେ ଭାରତ ସନ୍ତାନ
ନାରୀ ଶିର ଭାର ଦେବତା ପ୍ରଧାନ,

ବାଣୀ, ବୀଣାପାଣି, ଅନ୍ନଦା, ଈଶାନୀ,
ରମା, ନାରାୟଣୀ, ତ୍ରିତାପ ତାରିଣୀ,
ଧର୍ମେ କର୍ମେ ସଦା ସେ ସହଚାରିଣୀ ।

ବୃଥା ଭବତଳେ ନ କର ଦମ୍ଭର
ଭାରତରେ ଭବ ନାରୀ ଅତ୍ୟାଚାର
ବିଦେଶୀ ସରବେ ଗାଇବେ ବଖାଣି,
ନ ଗାଆନ୍ତୁ ନାରୀ ଦୁର୍ଦ୍ଦଶା କାହାଣୀ,
ଉଠ ନବ ତେଜେ ଉଠ ଆର୍ଯ୍ୟ ପୁତ୍ର
ଅପମାନେ ଅନ୍ଧ ଅବନୀରେ ମୃତ,

ଜାଗ୍ର ହେଉ ଆଜ ଦିବ୍ୟ ବୀର୍ଯ୍ୟମୟୀ
ସ୍ୱାହା ଅନଳର ପାଶେ,
ବଜ୍ରଧାରୀ ବାମେ ଶକ୍ତିମୟୀ ଶଚୀ
ଦେବଙ୍କୁ ଗରବୋଲ୍ଲାସେ;

ହେଉ ଅବତୀର୍ଣ୍ଣା ଉମା ଘରେ ଘରେ
ତ୍ରିଶୂଳଧାରିଣୀ, କରାଳ ଦର୍ପରେ

ଯେ ଭୁବନେଜ୍ ପାପ, ଦୈନ୍ୟ ସନ୍ତାପ
ଉଠୁ ଭାରତ ତା ପ୍ରାଚୀନ ଦର୍ପରେ

ମହା ମହିମାର ମହା ତପୋବନ
ହେବେ ରମଣୀ ନୈମିଷ କାନନ

ଶତତମ ବର୍ଷେ ସ୍ୱର୍ଣ୍ଣ ଅଳଙ୍କାର,
ଦୂରେ ଯାଉ ଆଜ ଅମୃତ ଆନନ୍ଦେ
ନୈରାଶ୍ୟ ବିଷାଦ ଆର୍ତ୍ତ ହାହାକାର ;

ବରଷ ବରଷ ମହା ଛଳନାରେ

ମୃଣ୍ମୟୀ ପ୍ରତିମା ଷୋଡ଼ଶୋପଚାରେ
ଆଜ ନ ପୂଜିବେ ଋଷିର ସନ୍ତାନେ,
ଜୀବନ୍ତ ଜନନୀ ଚରଣ କମଳ
ଲଭିବ ଭକତି-ଆରତି ବିମଳ,
ଆଜ ନ ମରିବେ ମାତୃ ଅପମାନେ

ଘରେ ଘରେ ହେବ ମାତାର ପ୍ରତିଷ୍ଠା,
ବଢ଼ିବ ଶକତି ସାଧନାର ନିଷ୍ଠା,

ଭାରତ-ସଦନରୁ ମିଥ୍ୟାଗୃହ ଶଙ୍କ
ଯିବ ଦୂରେ, ବହୁ ଦୂରେ,
ପୂତ ମାତୃ ମୂର୍ତ୍ତି ରଚିବେ ରମଣୀ
ଭାରତର ଅନ୍ତଃପୁରେ ।
ବୀରସୁତା ହେବେ ବୀର-ପ୍ରସବିନୀ,
ଚେ ଅରୁନ୍ଧତୀ, ବଶିଷ୍ଠ ଶୋଭନା,
ଯଶୋଦା କୁନ୍ତୀର ଯଶୋଗୀତି ପୁଣି
ନିନାଦିବ ଆର୍ଯ୍ୟ କ୍ଷିତ,
ଗୀତ ଦେବସୂତ ଆଦରେ ଶ୍ରୀଅଙ୍କେ
ଶୋଭିବେ ପୁଣି ଅଦିତ,
କୌଶଲ୍ୟା ସୁମିତ୍ରା ଶଚୀ ମାତା ଯା'ର
ସେ ଦେଶ ପୁଣି ନା ଦେଶ ଅହଂକାର,
ଫେର ତ ଆସିବେ ଶିବାଜୀ, ପ୍ରତାପ,
ନ କର ନ କର ବୃଥାରେ ବିଳାପ,
ଉଠିଥିଲୁ ଦିନେ, ପଡ଼ିଅଛୁ ତଳେ, ନ ହୁଅ ନିରାଶ ଭାଇ,
ଉଠିବୁ ଏଥର କେଶରୀ ବିକ୍ରମେ
ମାତାର ଉଷ୍ଣାହ ପାଇ ।
ମାଆ ସେ ଆମର ଧ୍ୟାନ, ଆରାଧନା
ମାଆ ତ ଆମର ସର୍ବାର୍ଥ ସାଧନା,
ମାତୃନାମ ମନ୍ତ୍ର ଜପି ହୃଦତନ୍ତ୍ରେ
ଉଠବୁଁ ଭାରତ ତେତ୍ରିଶ ତରୁଣୀ,
ଉଠିବୁଁ ଏଥର ତେତିଶ କୋଟି,
ଆଜି ନତ ଶିରେ ନ ରହଁ ମଲିନ ।

ଗଲଣି ଆମର ଘନ ଜଡ଼ତାର,
ଅପସରି ଯାଏ ଧୀରେ ଅନ୍ଧକାର

(ଏବେ) ଭାରତର ବକ୍ଷେ ଏକ ମହାଲକ୍ଷ୍ୟ
ବନ୍ଧା ନରନାରୀ ପ୍ରାଣ
ମିଶି ଭ୍ରାତା ଭଗ୍ନୀ ଭୂଞ୍ଜାଇବୁଁ ପ୍ରାଣ-
ପଣେ ମାତୃ ଅପମାନ ।

ଉଦ୍ଧାରିବେ ପୁଣି ଭାରତର ଭୂମି
ଦୁର୍ଗା ଦଶ-ପ୍ରହରଣେ,
ମନ୍ଦିରେ ମନ୍ଦିରେ ପୂଜିବେ ସ୍ୱଗଳ
ମୂର୍ତ୍ତି ଲକ୍ଷ୍ମୀ ନାରାୟଣେ ।

ଈଶ୍ୱର ପାର୍ବତୀ ମିଶି ବେନି ଅଙ୍ଗେ
ଶୋଭିବେ ଜାହ୍ନବୀ ବ୍ରହ୍ମପୁତ୍ର ସଙ୍ଗେ,
ଆଜ ଥରେ ଆର୍ଯ୍ୟ ଧରା,
ହୋଇବ ଅଖିଳ-ଅବନୀ-ବନ୍ଦିତା ନନ୍ଦନର ପୂଳଝରା ।



# କାମିନୀ ପ୍ରତି

ଯେବେ ଧୀରେ ଅସ୍ତାଚଳେ ଢଳପଡ଼େ ରବି
କନକ କିରଣେ ରଞ୍ଜି ପ୍ରତୀଚୀ ବଦନ,
କ୍ଷୁଦ୍ର ଖଣ୍ଡ ମେଘାବଳୀ ନାନାରଙ୍ଗ ଛବି,
ଉଜ୍ଜ୍ୱଳ ଆକାଶ ତଳ ମାନମା ଶୋଭନ ।

ଧୀରେ ଧୀରେ ବହିଆସେ ସାନ୍ଧ୍ୟ ସମୀରଣ,
ବହିଆଣେ ସୁଧାସ୍ୱର କେଉଁ ଦୂର ଦେଶୁଁ,
ପ୍ରଶାନ୍ତ ଅମ୍ବରେ ଧୀରେ ଫୁଟ ତାରାଗଣ,
ଜୁଳୁ ଜୁଳୁ ଚାହୁଁଥାନ୍ତି ସେ ଦୂର ଆକାଶୁଁ ।

ଧୀରେ କି ଓହ୍ଲାଇ ଆସେ ନଭେ ଅନ୍ଧକାର,
ଧୀରେ କି ଆଲିଙ୍ଗେ ଧରା ନିଶା ମନୋହାରୀ,
ଧୀରେ ନଭକୋଣେ ହସିଉଠେ ଶଶଧର,
ଧୀରେ ନୀଡ଼େ ବାହୁଡ଼ନ୍ତି ପକ୍ଷୀ ଧାଡ଼ି ଧାଡ଼ି ।

ସେକାଳେ ମୋ କୁଞ୍ଜବନେ କି ମନ୍ତ୍ରପରଶେ
ଜାଗିଉଠେ ସୁପ୍ତା ମୋର କାମିନୀ ସୁନ୍ଦରୀ,
ଘନନୀଳ ପତ୍ରକୁଞ୍ଜେ ମୃଦୁମନ୍ଦ ହସେ,
ବସନ-ଆବୃତା ଯୋଷା ହସେ ଯେଉଁପରି ।

ଓଡ଼ଶାର ଚନ୍ଦ୍ର ଦଶେ କ୍ଷୁଦ୍ର ଜଳାଧର
ପବନ ଆନନକାନ୍ତ ଶିର ବ୍ରୀଡ଼ାବଶ୍ରା,
ଅବନତ ନେଛେ ହସେ ଆଧା କ ସୁନ୍ଦର,
ଲଳିତା, କୋମଳା ବାଳା, ସୁବାସିତା, ସତୀ ;

ହସେ କଣଳସ୍ତ-ବାସ-ଆବୃତ ବଦନେ,
ସ୍ୱଳ୍ପଦ୍ରା କାମିନୀ, ପୂତା, ଶ୍ୱେତ-ଶୋଭନ୍ୱିତା,
ଫୁଟି ପତ୍ର ଅନ୍ତରାଳେ ଲୁଚେ ପତ୍ରକୋଣେ,
ପବନ ପରଶେ କ୍ଷଣେ କ୍ଷଣେ ଚମକିତା ।

ଶୀତଳ ମାରୁତେ ବହିଆସେ ଗନ୍ଧରାଶି,
ବହିଆସେ ଗନ୍ଧରାଶି ଆକୁଳ ମୋ ପ୍ରାଣ,
ଶୁଭ୍ର ଫୁଲ ପେନ୍ଥା ପେନ୍ଥା ମାଳ ପତ୍ରେ ମିଶି
ଲୁଚି କ ଦେଖାଏ ଲଜ୍ଜା ରମଣୀ ଭୂଷଣ ?

ସ୍ନେହଭରେ ଶିଶିରକଣା ଝରେ ଅନମ୍ବରୁ,
ସ୍ନେହ—ଅନ୍ଧକାର କୋଳେ ଆଲଙ୍ଗେ ଯାମିନୀ,
ଜନକ ଜନନୀ ସ୍ନେହ ସମ ପୂତ, ଗୁରୁ,
ଲଭି ଶତ ଗୁଣେ ତୋର ଦଶୁ କ କାମିନୀ ?

ପତ୍ର ଗହ୍ୱଳରେ କନ୍ତୁ ଭେଦ ଅନ୍ଧକାର
ଶୃଦ୍ଧନୀ ଚୁମ୍ବନେ ତୋତେ ଚୁମ୍ବେ ଶୁଭ୍ରଚନ୍ଦ୍ର,
ଥରେ ତୋର କ୍ଷୁଦ୍ର ବକ୍ଷ ପ୍ରେମେ ଥର ଥର,
ପରଶେ ଶୃଦ୍ଧନୀ ଯେବେ ପବ ଧୃତ ରନ୍ଧ୍ର ।

ମୃଦୁବାତ ଶକମ୍ପିତା, କାମିନୀ କୋମଳା,
ସତେ କି ପ୍ରେୟସୀ ବାର୍ତ୍ତା ଚନ୍ଦ୍ର ସମୀପରୁ
ଆଣି କାନେ କହୁଯାଏ, ରମ୍ୟ ଲଜ୍ଜାଶୀଳା,
ତୋତେ ସମୀରଣ, ତେଣୁ ପ୍ରେମାବେଶେ ଥରୁ ?

ଶବ୍ଦାନତ ତୋ ବଦନ, ନାହିଁ ମୁଖେ କଥା,
ସରଳତା ଜାଣି ତୋର ଦରଦ ସମୀର,
ତୋହର ସୁରଭିରାଶି, ଜାଣି ଚନ୍ଦ୍ର ବ୍ୟଥା,
ସଜାଡ଼ି ଦିଅଇ ଯେହ୍ନ ଶ୍ରଦ୍ଧା ଉପହାର !

ଜାଣି ତୋତେ ଲଜ୍ଜାବତୀ ତେବେ ମିଛେ ମିଛେ
ପଶଇ ଶଶାଙ୍କ ତୋର ପତ୍ର ଆବାସରେ,
ସୁନ୍ଦର ସୁନ୍ଦରୀ ସଙ୍ଗ, ଆଦରଇ ସ୍ୱଚ୍ଛେ,
ଗୁଣ ଚିହ୍ନେ ଗୁଣୀ, ଏ ତ ଚଳିତ ଭବରେ !

ଚନ୍ଦ୍ର ଶ୍ୱେତ ଶରୀର ମିଶେ ତୋର ଶ୍ୱେତା ଶରୀର,
ସୁନ୍ଦରୀ ପରଶେ ବାଳା ଦିଶେ ଅପସରା,
କହୁନାହିଁ କଥା, କିନ୍ତୁ ତାର ମୌନବ୍ରତ
କରେ ତୋର ଶୁଭ୍ରତନୁ ଶତଗୁଣେ ଗୋରା ।

ଯେତେ ପତ୍ରବାସେ ଲୁଚି ଆବରୁ ବଦନ,
ତେତେ ତୋ ସୁରଭି ରାଶି ଚହଟି ଚୌଦିଗେ,
ଦିଏ ତୋର ପରିଚୟ କାମିନୀ ସୁମନ !
ଇଚ୍ଛେ ତୋଳିବାକୁ କେତେ ଆଦରେ ଦୁଆରେ ।

କେତେ ଥର ଗାଇଛେ ତୋତେ କାମିନୀ ସୁନ୍ଦରୀ !
ଜଗତରେ ନାରୀତ୍ୱର ଶୁଭ୍ର ନିଦର୍ଶନ,
ନାରୀର ସୌନ୍ଦର୍ଯ୍ୟ ଲଜ୍ଜା, କୋମଳତା ଶିରୀ,
ଶୁଭ୍ର ପବିତ୍ରତା ତା'ର ଜୀବନେ ରତନ ।

ଲୁଚି ପତ୍ର ଅନ୍ତରାଳେ ବାସ ବିତରଣେ
ଶିଖାଉ କି ରମଣୀର ଗୃହଧର୍ମନୀତି,
ସଂସାର ଆଶ୍ରମେ ନାରୀ କର୍ତ୍ତବ୍ୟସାଧନେ
ଲଭଇ କଲ୍ୟାଣ ଚିର ପବିତ୍ର ଜୀବନ ।

କେତେ ଫୁଲ ଫେନ୍ନା ଫେନ୍ନା ତୋଳେଁ ପୁଷ୍ପମନେ,
ସଜାଇବି ବୋଲି ମୋର କ୍ଷୁଦ୍ର ନିକେତନ,
ଫୁଟେ କି କାମିନୀ ଫୁଲ ମୋ କ୍ଷୁଦ୍ର ଜୀବନେ
ପବିତ୍ର କର ତା ବାସେ କଳୁଷିତ ମନ !

ଯେବେ ନିଶାଯାମେ ବସି ବାତାୟନ ପାଶେ
ପଠନେ ମଗନ ମୋର ଅବଶ ପରାଣ,
କ୍ଷଣକେ ହୁଅଇ ମୁଗ୍‌ଧ କାମିନୀ ସୁବାସେ
ବହିଆଣେ ସେ ସୁବାସ ନୈଶ ସମୀରଣ ।

ଅନ୍ଧାରେ ଫୁଟି ତୁ କରୁ ବାସ ବିତରଣ,
ଦିବାରେ ଆଲୋକେ ମ୍ଳାନ ହୋଇ ଝଡିଯାଇ,
ପଡ଼ିଥାଉ ତରୁତଳେ, କରେ ଆହରଣ
ମଳିନ ସେ ପୁଷ୍ପରାଶି ସ୍ନେହାଞ୍ଜଳି ଭରି ।

ଅନ୍ଧାରେ ମନ୍ଥମା ଚୋର, ଗୋପନେ ତୋ ଶିଶୁ
ପଥ କୋଣେ, ଗୁହେ ଯଥା ନାରୀ ଗୁଣବନ୍ତି,
ପ୍ରାଣର ଆଦର ସ୍ନେହ ସୁଗନ୍ଧ ବିତର
ତାଳେ ଶତ ପ୍ରାଣେ ଶାନ୍ତି, ପବିତ୍ର ପୀରତି ।

ଗୁହଶ୍ରୀ ପରଶେ ଫୁଟି ହସୁ ତୁ ଲଳିତା,
ଶିଖାଉ କି ପତି ତୋର ସର୍ବସ୍ୱ ଜୀବନେ,
ପତିର ଆଦର ସ୍ନେହ ଲଭି ପତିବ୍ରତା
ରହେ ପଦେ ଚିରନତ ପବିତ୍ର ବଦନେ ।

ବର ଲୋ ତୋ ପରି ମୋତେ କାମିନୀସୁନ୍ଦରି,
କରପୂତ ସୁବାସିତ ମୋ କ୍ଷୁଦ୍ର ହୃଦୟ,
ତାଙ୍କୁ ପ୍ରତିପାଣେ ପ୍ରେମପୂତ ଶାନ୍ତିବାରି,
ହେଉ ମୋ ଭୂଷଣ ଲଜ୍ଜା, ନମ୍ରତା, ବିନୟ ।



# ଶ୍ରୀଛାମୁ

ଯେ ଦିନ ଅନ୍ଧାରେ ଶୁଭ୍ର ତୃଷାରେ
କମ୍ପୁଥିବ ଶୀତ ନିଶୀଥେ,
ଜଳୁ ଜଳୁ ତବ କ୍ଷୁଦ୍ର ପ୍ରଦୀପ
ଗୁପ୍ତ ଏ ଚିତ୍ତେ ସ୍ତିମିତେ ।

ଯେ ଦିନ ରୁଦ୍ର ରୌଦ୍ର ଦହନେ
ବୁଲୁଥିବ ତୃଷା ଘର୍ମରେ,
କ୍ଷୁଦ୍ର ତୁମର କୃପା ଝରଣାର
କଳଗୀତି ବାଜୁ ମର୍ମରେ ।

ଯେ ଦିନ ନୀରବ ରୋଗ ଶେଯେ ପଡ଼ି
ନୟନ କାନ୍ଦିବ ରୁଧିରେ,
ଅଲକ୍ଷିତ ହାତେ ଛୁଇଁଯାଅ ମୋତେ
ସ୍ନେହୀ ସଖା ସମ ସୁଧୀରେ ।

ଯେ ଦିନ ଭିକାରୀ ପରାଏ ବୁଲିବି
ଦ୍ୱାରର ଦୁଆରେ ଦୁଆରେ,
ତୁମର ଭଣ୍ଡାର ମେଲ ଆଜ ପ୍ରଭୁ
ଦୀନ ଦୁଃଖୀଟିର ଆଗରେ ।

ଯେ ଦିନ ଭୀଷଣ ରଣ ପ୍ରାଙ୍ଗଣରେ
ଏକା ହୋଇଥିବ ଛୁଡ଼ା ମୁଁ,
ଶତ କରେ ଶସ୍ତ୍ର ଧରି ବାହାରିବ
ଶତ ଅରି କେଶେ ଶ୍ରାନ୍ତମୂ ।

ଯେ ଦିନ କଠିନ କାରା ନଗଡ଼ରେ
ଦୃଢ଼େ ହୋଇଥିବ ବନ୍ଧନ,
ନନ୍ଦନାଶନ ଚନ୍ଦ ଭୂମରେ
କରୁ ତାହା କ୍ଷଣେ ଛେଦନ ।



# ନରନାରାୟଣ

ତୁମେ ଏଇ ପଥେ ଯିବ ବୋଲି
ସାରା ରାତି ଧରା ଥିଲା ଜାଗର,
ରଖିଲା କବାଟ ଖୋଲି ।

ବଡ଼ ସୁନ୍ଦର ମୋହନ ଲୀଳା
ଆକାଶେ ଅମିୟ ଆଲୋକ ମେଳା,
ସୂର୍ଯ୍ୟ ଚନ୍ଦ୍ରାତପ ଆପି, ଅନନ୍ତ ଗଗନ ବ୍ୟାପି
କୋଟି ତାରାଧାରେ ମଙ୍ଗଳ ଆଳତି ଜାଳି ।

ହ୍ରଦ ଜଳସାଇ ବାସ ବିକଶାଇ
ଫୁଟାଇ କୁସୁମ ମାଳ ।

ନିଖିଳ ଜାଗିଲା ତୁମରି ପାଇଁ
ମହା ମହିମମନ୍ତଙ୍କୁ ଥିଲା ଅନାଇଁ,

ବହିଲା ସୁବାସ ମଳୟ ମନ୍ଦେ,
ଗାଇଲେ ବିହଙ୍ଗ ଲଳିତ ଛନ୍ଦେ
ତବ ସ୍ତବ ସ୍ତୁତି ବନ୍ଦନା
ନବ ଧାନ, ଦୂବ ଚନ୍ଦନ ଘେନି
ସଜାଡ଼ିଲା ଅର୍ଘ୍ୟ ଥାଳି ।

ତୁମେ ଗଲ କେଉଁ ପଥେ
କେହି ନ ଜାଣିଲ ସତେ,

ଦରିଦ୍ର ଇତର ବେଶେ ଦ୍ୱାରେ ଦ୍ୱାରେ
ପଡ଼ିଲା ଶ୍ରୀପାଦ ଧୂଳି,
ଶତ ଛିନ୍ନ ତବ ଭିକ୍ଷାର ଥଳୀ
ପୂରଇଲ ବୁଲି ବୁଲି,
କେହି ନ ଚହ୍ନିଲେ ନରନାରାୟଣ-
ଛଦ୍ମେ ପ୍ରେମ ଦେଲ ଢାଳି।



# କୃଷକ ପୁଅ

କୃଷକ ଘରର ପୁଅ ମୁଁ କୃଷି ମୋ ବ୍ୟବସାୟ
ମୋ ସମା ଅଛି କେ ଜଗତେ କା ବଞ୍ଚିବା ଉପାୟ ?

ସୁନ୍ଦର ଶାଗୁଆ କ୍ଷେତରେ ଧାନ, ମୁଗ, ଗହମ,
ପାଚିଲା କିଆରୀ ଦେଖିଲେ ଉଲ୍ଲସିତ ମରମ ।

ମୋ ହଳ ଲଙ୍ଗଳ ଫାଳରେ କମଳାଙ୍କ ନିବାସ
କୃଷି ଅଛି ଘରେ ଯାହାର ଦେଖେ ତାହାର ବାସ ।

କିନ୍ତୁ ଆଜ କାହିଁ ମୋ ବାସ ଏ ଦୂର ବିଦେଶରେ,
କୃଷି ଛାଡ଼ି କରେଁ ଚାକରୀ ଥାଇ ପର ବଶରେ ।

ଦଶ ପୁରୁଷରେ ଗୋଲାମ କେହି ନ ଥିଲେ ଜଣେ,
ବନ୍ଦୁଥିଲ ସୁନା କଳସ ଧାନ ଲକ୍ଷ ଭରଣେ ।

ସେ ଲକ୍ଷ ଭରଣ କଥା ତ ସପନର କାହାଣୀ
କୃଷି ଜମି ମାଣେ ନାହିଁଟି, ଘରେ ପାଞ୍ଚ ପରାଣୀ ।

ମରୁଥିବେ ଭୋକ ଉପାସେ, ମୁଁ ଦୂର ବିଦେଶରେ,
ମୋ କମେଇ ମୋତେ ନିଅଣ୍ଟ, ଦିନ କାଟେ କଷ୍ଟରେ ।

ବଲର ଖଜଣା ଲଗି ମୁଁ ଥାଳୀ କଂସା ବିକଲି
ବୁଢ଼ା ହୁଡ଼ା ବିକ ସାହୁର ସୁଧ ମୂଳ ଶୁଝିଲି ।

ଘରପା ହାତର ଖଡ଼ୁକୁ ବନ୍ଧା ପକାଇ ଆଣି
ଠଙ୍କା ଦଶଟାରେ ଚାକିଲି ପିଇ ପେଜ ତୋରାଣି ।

ଆଖର ନମା ଘରେ ରହିଲା ନାହିଁ ଫଟା କଉଡ଼ି,
ଘାବଲି ଏଥର ଗଳାରେ ଦେବି ଅବା ଦଉଡ଼ି ।

ସେଣ୍ଟ ସମୟରେ ଗୋବିନ୍ଦା ଆସିଲି କଲିକତା,
କଲିକତା ରୋଜଗାରର କହିଲି କେତେ କଥା ।

ତା କଥାରେ ସିନା ବାହାର ଅଇଲି ମୂର୍ଖ ପରଣେ,
ଆଜି କିଏ ଅଛି ଜଗତେ ମୋ' ଭଳି ଦୁଃଖୀ ଜଣେ !

ବୋଝ ବୋହି ବୋହି ମୋହର ପିଠି ଗଲାଣି ଫାଟି
ମାଡ଼ ଗାଳି ଭୋକେ ଗଲାଣି ଶୁଖି ପଞ୍ଜରା କାଠି ।

ଘରକୁ ପଠାଇ ଅଧିକ, ଅଧିକ କମେଇରେ
ଦିନ କାଟେଁ, କିଛି ଉଡ଼ାଏଁ ଅଫିମ ଗଞ୍ଜେଇରେ ।

ମୋର ଯେତେ ସଙ୍ଗୀ ସଙ୍ଗାତ ସବେ ଧରମ ହୁଡ଼ା,
ନାନା ମନ୍ଦ କର୍ମ କରି ସେ ସହଜେ କୂଳବୁଡ଼ା ।

ତାଙ୍କ ସଙ୍ଗେ ପଡ଼ି ଦୁଷ୍କାର୍ଯ୍ୟେ ସାଜିଛି ଦିନ ରାତି,
ଥରେ ଥରେ ନିଜ ଦୁର୍ଦ୍ଦଶା ଭାବି ବିଦାରେ ଛାତି ।

ହା ଅନ୍ନ ହା ଅନ୍ନ କରି ମୁଁ ବିଦେଶେ କେତେ କାଳ,
ନରକର କୁଣ୍ଡ ଘାଣ୍ଟିବ ଜନ୍ମ ଥିବ କପାଳ ।

କୃଷକ ଘରର ପୁଅ ମୁଁ କୃଷି କରି ବଞ୍ଚିବି,
କୁଲି କାମ କରି ବିଦେଶେ କମ୍ପା ମୁଣ୍ଡ ଗୁଞ୍ଜିବି ?

ନିଜ ସୁନା ଖଳା ଭୂଇଁକି ଫେରିଯିବି ଏଥର,
ଗୃହ ବାସ କରି ସୁଖରେ କରିବି ପୁଣି ଘର ।

ଜନନୀ ଜନ୍ମ ଭୂଇଁ ତ ସ୍ୱର୍ଗ ବଳି ମହାନ,
ଯେଣୁ ମାଟି ମୋର ସମ୍ପତ୍ତି ମୁଁ ତା ପ୍ରିୟ ସନ୍ତାନ ।

ମୋହରି ଲଙ୍ଗଳ ଫାଳରେ ଲକ୍ଷ୍ମୀ କରିବେ ଘର,
ଅମାର ଅମାର ଧାନରେ ପୂରିଯିବ ଏଥର ।

କୁଲି ଗିରି କରି ଦେଶକୁ ଆଉ ନ ଦେବି ଲଜ୍ଜା,
କୁଲି ଗିରି କଲେ ଏଥର ଯେଣିବି ମାଟି ଶଯ୍ୟା ।

ପଚେ ସେ ମାଟିର ଶେଯରେ ହାଡ଼ ମୋ' ମିଶିଯାଉ,
ତଥାପି ଓଡ଼ିଆ ଭୂଇଁର ଟେକ ଜଗତେ ଥାଉ ।

ଓଡ଼ିଆ ଚଷାର ପୁଅ ମୁଁ, ମୁଁ ତ ମାଟି ସେବକ,
ମୋହରି ବଳିଷ୍ଠ ବାହୁରେ ନିତି ପ୍ରଜାପାଳକ ।

ଦରିଦ୍ର ବୋଲି ମୁଁ ମୋ' ଦେଶ ଦରିଦ୍ର ବୋଲାଇଛୁ,
ମାଟିକୁ କରିବି ସୁନା ମୁଁ ମନେ ଆଣ୍ଠି ବାନ୍ଧିଛୁ ।



# ଆତ୍ମବଳ

ଝଡ଼ର ଆର୍ତ୍ତନାଦ ବେଦନା ବିନାଶି
କଣ୍ଠେ ଦିଅ ମୋର ଗୀତ,

ଶୁଣୁ ଚରାଚର ମୋ ବଂଶୀ ଝଙ୍କାର
କରୁ ତା ନିଖିଳ ନନ୍ଦିତ ।

ମାୟା ଜାଲ ବୁଣା ଶେଷ ହେଉ ମୋର,
ଗୁନ୍ଥି ବସେ ଫୁଲ ମାଳ,

ଶର ଅଶ୍ରୁ ସିକ୍ତି ଶୁଷ୍କ ହେଉ ମୋ'
ହର୍ଷଧାର ଦିଏଁ ଢାଳି ।

ଦୀର୍ଘ ଅଳସ ଦିବସ ଯାମିନୀ
ପୂରିଉଠୁ କର୍ମ କୋଳାହଳେ,

ଶକ୍ତି ପ୍ରାର୍ଥନା ଲଭୁ ପ୍ରତିଷ୍ଠା
ନିର୍ଭର ପୂର୍ତ୍ତି ଆତ୍ମବଳେ ।



# ମିଳନ

କର ଦୂର କର ଦୂର ସରମର ଆବରଣ,
ଅଙ୍ଗେ ଅଙ୍ଗେ ମୋର କର ଆଲିଙ୍ଗନ,
ହିଆରେ ଥୁଅ ଶ୍ରୀଚରଣ ।

ଗୋଟା ଜନ୍ମ ମୋର ଚିର ତୃଷାତୁର,
ସହିବ କେତେ ସେ ବିଜନର ଘର,

ନିତି ଲାଜେ ଲାଜେ କେତେ ମରୁଥିବ,
ପାଇବାର ଆଶା ନ ପାଇ ଝୁରିବ,
ଲୋକ ଲୋକାନ୍ତରେ କେତେ ଭ୍ରମୁଥିବ
ସହିବ ଜନମ ମରଣ ।

କାହିଁ ଏ ସାଧନା, କାହିଁ ଏ ବେଦନା,
କହିବା କହିବ ନ ଫିଟେ ରସନା,

କେତେ ଦୂରେ ଦୂରେ ରହିଥିବ ଆଉ,
ସହିବ ବିଚ୍ଛେଦ କଷଣେ ଦାଉ,
(ଏବେ) ନଦୀ ସିନ୍ଧୁ ପ୍ରେମ ମିଶ ମୋ ମାନସେ,
ନର ହେଉ ନାରାୟଣ ।



# ନିସ୍ୱାର୍ଥ

ନିଜ ସ୍ୱାର୍ଥ ଚିନ୍ତା ଜଗତ ଯେବନ
ଦେବ ମୋତେ ଶତ ପୀଡ଼ା,
ଦୁର୍ବହ ଭାରେ ପ୍ରାଣି ନ ପଡ଼ିବ
ଦୃଢ଼ ପଦେ ଦେବ ଛୁଡ଼ା ।

ଆନ ଲାଗି ଯେବେ ସହିବ ମୋହର
କଷ୍ଟ ସଙ୍କଟ ବାଉ,
ଆପଣାର ଇଷ୍ଟ ମଣି ତା ସୁଖତେ
ଦେବ ଆନନ୍ଦର ଚାଉ ।

ଆଦର ଆସନେ ବସାଇ ଯେବେ
ଭାଗ୍ୟ ଦେବତା ସୁଖେ,
ନିଜ ବଡ଼ ଘଟଣେ ରଖିବ ନିର୍ଜନେ
ଆନ ଦେବେ ନଚ ମୁଖେ,

ନିଜ ଲାଜ ଯେବେ ଗ୍ରାସିବ ମରମ
ଆନେ ନ ମଣିବ ଭୁଲ,
ଆନର ଘଟନେ ନ ହସିବ କେବେଁ
ନିଜକୁ ଲଗଣ ଭୁଲ ।



# ଅମୃତ ସନ୍ତାନ

ବିନାଶ ମୋହର ନୁହଇ ତୁମର
ପ୍ରେମମୟ ଅଭିପ୍ରାୟ,
ରହିଛି କୌଶଳେ କଳେବର ମମ
ଇନ୍ଦୁ କାନ୍ତକଳା ପ୍ରାୟ ।
ନୟନେ ମୋହର ଶତ ସୂର୍ଯ୍ୟ ପ୍ରଭା,
ଅଙ୍ଗେ ଅଙ୍ଗେ ରମ୍ୟ ନନ୍ଦନର ଶୋଭା,

ବାହୁରେ ଅସୀମ ଅଜେୟ ଶକତି
ହୃଦୟେ ବିଶାଳ ଭକତି,
ଶତ ଶୋକ ଜରା ଘେରିଛି ମରଣ,
ତଥାପି ନୁହେଁ ମୋ କ୍ଳାନ୍ତ ଚରଣ,
ଜନମେ ଜନମେ ନବ ନବ ବେଶେ
ଧରେ ନବ ନବ କାୟ ।

ଚିର ବିକାଶ ମୋ ଜନ୍ମ ଅଧିକାର,
ଚିର ମୁକ୍ତ ମମ ଉନ୍ନତି ଦୁଆର,
ଅମୃତ ସନ୍ତାନ ତୁମର ମୁଁ ତାତ,
ନିର୍ମଳ, ପୂତ, ଅବଦାତ,

ପାତକ କଳଙ୍କ ନରକ-ନଗରେ
କେତେ ଧନ ବନ୍ଧାଥିବ ହେ ନବରେ ?

ଧୂଳିରେ ଧୂସର କାଚରେ କପାଇଁ
କରୁଥିବ ହାୟ ହାୟ !

ଛାର ଅବା ମୋତେ ମାର,
ଏତକ ମୋ ଅହଙ୍କାର,

ତବ ବଡ଼ ପଣେ ଜଣା ଯା ମୋ' ଠାରେ
ପୂର୍ଣ୍ଣ ହେବ ସାରହସାର ।



# ଆହ୍ୱାନ

ସେନାପତି ଆଜ ଦେଇଛନ୍ତି ଡାକ,
ଉଠ ଭାରତର ବୀରପୁତ୍ର ଯାକ ।

ଅପୂର୍ବ ଅସହଯୋଗ ରଣାଙ୍ଗନେ
ଆସ୍ତେ ଅସ୍ତ୍ର କସି ପଶ ଜଣେ ଜଣେ ।

ଭାରତର ଯେତେ ବୀର ଗୁଣମଣି
ଚୂଳଆସ ସେନାପତି ଡାକ ଶୁଣି ।

ଗାନ୍ଧୀ ଯୋଗୀବୀର ତୁମର ଅଗ୍ରଣୀ,
ଶିବ ସୁର ଉଠ ତରୁଣ ତରୁଣୀ ।

ନାହିଁ ଏଥି ଲେଡ଼ା ବନ୍ଧୁକ, କମାଣ,
ହତିଆର ଏଠି ଏକା ତୁମ ପ୍ରାଣ ।

ତୁମ ରକ୍ତବିନ୍ଦୁ ଗୁଳି ବାରୁଦର,
ଏହି ଅନସ୍ତ୍ର ଆଜ ହୁଅ ହେ ହାଜର ।

ସେନାପତି ତବ କଲେଣି ଆହ୍ୱାନ,
ଆସ ଆଗେ କିଏ ଦେବ ପ୍ରାଣଦାନ ।

ଆସ ଏକ ସଙ୍ଗେ ହିନ୍ଦୁ, ମୁସଲମାନ,
ଶିଖ୍, ପାର୍ଶୀ, ବୌଦ୍ଧ, ଇହୁଦୀ, ଖ୍ରୀଷ୍ଟାନ ।

ଏହି ହିନ୍ଦୁସ୍ଥାନେ ତୁମ ବାସସ୍ଥାନ
ତାର ଅପମାନେ ତୁମ ଅପମାନ ।
ଧର୍ମ ଯୁଦ୍ଧ ତବ ଆସିଛି ଆହ୍ୱାନ
ବାଜେ ରଣଶିଙ୍ଗା ଶୁଣ ଦେଇକାନ ।
ହସ୍ତ ଦକ୍ଷ ତେଜ ଉଠ ବର୍ତ୍ତମାନ
ଆତ୍ମବଳେ ଆଜ ହୁଅ ବଳବାନ ।
ଅମିତ ବିକ୍ରମ ଅସୁର ଦଳନ
ଆତ୍ମ ଦର୍ପେ ଉଠ ବୀର ଅଗଣନ ।
ଉଠ ଭାରତର ସେନା ନାବପୁଣି
ଗାନ୍ଧୀ ବିଷ୍ଣୁରୂପୀ ତୁମର ଅଗ୍ରଣୀ ।
ଭାରତ-ତରୁଣ ଭାରତ-ସମ୍ବଳ
ତେବେ ମୂର୍ତ୍ତିମନ୍ତ ପୂତ ହୋମାନଳ ।
ଭାରତ-ଭରସା ଭାରତ-ସଙ୍ଗାଳ
ଉଠ, ଡାକେ ଦେଶ, ପ୍ରାଣଦିଅ ଢାଳ ।
ଅସ୍ତ୍ରଧାରୀ ସଙ୍ଗେ ନିରସ୍ତ୍ର ସଂଗ୍ରାମ
କହ, କେବେ କାହିଁ ଶୁଣି ଥିଲ କାନ ?
ପଶୁତ୍ୱ ବଳରେ ଝଞ୍ଜନ କାରଣେ
ଧରିବନ୍ଧୁ ଅତ୍ୟାଚ୍ଚର ନିବାସନେ
ଅସୁର ବଳକୁ କରିବାକୁ ନାଶ
ସହାୟ ତୁମର ପ୍ରଭୁ ଶ୍ରୀନିବାସ ।

ମୋହନ କରମଚାନ୍ଦ୍ର ମହାମତି
ଧର୍ମଯୁଦ୍ଧର ତବ ଆଜ ସେନାପତି,

ଧର୍ମବାନାଧାରୀ କରସ୍ଥ କାର୍ଯ୍ୟକ,
ଉଠ ଭାରତର ଯୁବକ ସୈନକ ।

ରଣେ ତୁମ ଆଗେ ଯିବେ ଜଗନ୍ନାଥ,
ଚକ୍ରେ ଖଣ୍ଡିବେ ସହସ୍ର ଉତ୍ପାତ ।

'ଜୟ ମା କଂଗ୍ରେସ' ଉଚ୍ଚ ଦେଇଡାକ
ଉଠ ଭାରତର ବୀରପୁତ୍ର ଯାକ ।

ଆଜ ଧର୍ମ ଯୁଦ୍ଧେ ମହା ଅଭିଯାନ
ବାଜେ ବଜ୍ରଘୋଷ, ଶୁଭେ ବଜ୍ରଗାନ,

କୁମାରିକାଠାରୁ ହିମ ଗିରିଯାଏ
ଗଗନ ପବନ ସେ ତାନ କମ୍ପାଏ ।

ଅଛୁ କିଏ ବୀର ଭାରତ ସନ୍ତାନ,
କାହା ବକ୍ଷେ ବାଜେ ଅଗ୍ନେୟ ଆହ୍ୱାନ ?

ତାତିଲାଣି କା'ର ରକ୍ତ ଶିରେ ଶିରେ
ବିଜୁଳି ଚମକେ କାହା ଧମନୀରେ ?

ବୀର ଗର୍ବେ ନାଚିଉଠେ କା'ର ଛାତି
ଦେଶପ୍ରେମ ମଦେ କେ ଉଠିଛୁ ମାତି ?

କାହା ପ୍ରାଣେ ଜାଗେ ଦେଶାତ୍ମ-ସମ୍ମାନ,
କରିବ କେ ତା'ର ଲଗି ଆତ୍ମଦାନ ?

ଶକ୍ତିହୀନ ତା'ର ବଜଠାରୁ ଟାଣ,
ସୁଖେ ହସି ହସି କେ ଦେବକ ପ୍ରାଣ ?

ତୁମ ଭାଗ୍ୟରବି ଉଇଁବ ଏଥର,
ସମସ୍ତ ଆସିଲା ଭାଗ୍ୟ ପରୀକ୍ଷାର ।

ଜୟଚନ୍ଦ୍ର ଠାରୁ ମୀରଜାଫର ଯାଏ
ଅଗଣିତ ବାରତା ଚିତ୍ତ ଚମକାଏ ।

କରିଥିଲେ କାର୍ଯ୍ୟ ବିଶ୍ୱାସହନ୍ତାର,
କରିବ ଏଥର ତା'ର ପ୍ରତିକାର ।

ହସି ହସି ପ୍ରାଣ ଦେବନି ହେ ଭାଇ,
ହିନ୍ଦୁସ୍ଥାନ ସ୍ୱାଧୀନତା ଗୀତ ଗାଇ ।

ଭାରତମାତାର ବୀରପୁତ୍ର ଗଣ,
ରଣସ୍ଥଳ-ଧୂଳି କର ଆଲିଙ୍ଗନ ।

ଶାନ୍ତ ଅସ୍ତ୍ର ତବ ଏ ଶାନ୍ତସମରେ,
ବକ୍ଷ ମେଲି ଠିଆ ହେବ ଅକାତରେ ।

ଖୋଲା ଛାତିପରେ କମାଣ, ବନ୍ଧୁକ,
ଦେଖାଇବେ କେତେ ଗୁଳିର କନ୍ଦୁକ ।

ହଣା ହେବ ବୀର ଶିର ଗୋଟି ଗୋଟି,
ତୁମ ରକ୍ତ ଭୁଇଁତଳେ ଯିବ ଲୋଟି ।

ଗଙ୍ଗାଧାର ସଙ୍ଗେ ରଙ୍ଗା ଧାର ମିଶି,
ପୋଛିଦେବ ଦୁଃଖ ଅତ୍ୟାଚାର ରାଶି ।

ଦୁଷ୍କୃତ ପାପ ତହିଁ ଯିବ ଗ୍ରାସି,
ଉଠିବ ଆଲୋକ ଅନ୍ଧକାର ନାଶି ।

ଆଜନ୍ମ ଅମାନୁଷ ତପ୍ତ ଅଗ୍ନିକୁଣ୍ଡ,
ମୁଣ୍ଡମାଳା ତବ ହେବ ତହିଁ ରୁଣ୍ଡ ।

ପୁରୋହିତ ନଳେ ଗାଣ୍ଠ ସଲ୍ଲାସନେ,
କେ ଦେବ ଆହୁତି ଆସ ହେ ବନ୍ଧନେ ।

କେତେ କେତମାଡ଼, କେତେ କାରାବାସ,
ଦ୍ୱୀପାନ୍ତର, ରାଜ୍ୟାନ୍ତର, ପ୍ରାଣନାଶ,

କ୍ଷୁଧା, ହରତାଳ, ପୋଲିସର ଲଠ,
ମୁଷ୍ଟି ପ୍ରହାରର ସହିବ ଏକାଠି ।

କଳ ନୋହିବ ହେ ଯନ୍ତ୍ରଣା ତୁମର,
ସହିବାକୁ ଆରେ ହୁଅ ଅଗ୍ରସର ।

ଏବେ କି ଯନ୍ତ୍ରଣା ନ ସହୁଛେ ଭାଇ,
ଅନ୍ନବସ୍ତ୍ର ବେନି ନେଲା ଯେ ଛଡ଼ାଇ ।

ଦୁର୍ଭିକ୍ଷ, ଦାରିଦ୍ର୍ୟ, ବନ୍ୟା, ରୋଗଦାଉ,
ଋଣ, କରଭାର ସାରେ ତୁମ ଆୟୁ ।

ନାହିଁ ସେ ଭାରତ ଦେବତା ବାଞ୍ଛିତ,
ଆଜ ଅନାଥିନୀ ଜଗତେ ଲାଞ୍ଛିତ ।

ହିମାଦ୍ରି, ମଳୟାଦ୍ରି ଯା'ର ବେନି ସୀମା,
ଯା'ର ଜଗନ୍ନାଥ ପ୍ରଭୁଙ୍କ ମହିମା ।

ଚେଙ୍ଗ ମେରୁ ସମ ଲଭିଛି ପ୍ରଗୃତ,
ଯା' ନାଉରୀ ପୁଅ ଲଙ୍ଘି ପାରାବାର ।

ଜାଭା, ବ୍ରହ୍ମ, ଶ୍ୟାମ, ବୋର୍ଣ୍ଣିଓ, ଜାପାନ,
ମାଲୟ, ସୁମାତ୍ରା, ଚୀନେ ଦେଲା ଜ୍ଞାନ ;

ଅରଘ ଚନ୍ଦନ, ଧାନ, ଦୁବ, ଘିଅ,
ସୁନାଥାଳି ସାଜ ଯା' ପାଖବ ଝିଅ ।

ବାପ ଭାଇଙ୍କର ବନ୍ଦାଏ ବୋଇତ,
ଭଙ୍ଗା ଦେଉଳୀର ଗୀତ ଏ ଅଙ୍କିତ ।

ଯା' ଅମ୍ବର ଦେଖା ଲକ୍ଷ ଭରଣରେ,
ବଞ୍ଚିଥିଲ ସୁନା କଳସୀ ପୂର୍ବରେ,

ନାରୀ ଥିଲେ ଯା'ଙ୍କ ଧନୁକଧାରିଣୀ,
କୋଟି କାରୁକଳା-ଲୀଳା-ଗରବିଣୀ,

ସେ କୃଷୀ, ଶିଳ୍ପୀଙ୍କ ଦୁର୍ଦ୍ଦଶାର କଥା,
ଭାବଲେ କା ହୃଦେ ନ ହେବଟି ବ୍ୟଥା ?

ପେଟେ ନାହିଁ ଦାନା, ଦେହେ ନାହିଁ କନା,
ଦାନବୀୟ ରୋଗ, ଟିକସ ଗଞ୍ଜଣା,

ଚଷାର ଟଙ୍କାକୁ ଝିପେ ନାହିଁ ଲୁଣ,
ବାନ୍ଧୁଛି ଜାତ ଶୋଷଣର ଋଣ ?

ଅତୀତ ଗରିମା ଶାସନ ପ୍ରଣାଳୀ,
ଚେତେ ନିଶ କୋଟି ଯା' କବଳେ କାଙ୍ଗାଳୀ ।

ମୁହେଁ ମିଠା ପେଟେ ଶାଣଦିଆ ଖୁର,
ଛଳ ବ୍ୟବସାୟୀ ଦୁର୍ବୁଦ୍ଧି ଚତୁର ।

ନିଜ ଦେଶେ ଆଜ ଆମେ ନିର୍ବାସିତ,
ବାଘ ଭାଲୁଙ୍କରେ ମୃଗଭଳି ଭୀତ ।

ଗ୍ରେଟ୍ ବ୍ରିଟେନ୍ ଯେ ଭୂଷାର ପ୍ରଧାନ,
ନାହିଁ ତହିଁ ବୃହତ ଶସ୍ୟ କ୍ଷେତ୍ରମାନ ।

ଖାଦ୍ୟ ଯା' ନଅଣ୍ଟେ ତିନି ସପ୍ତାହକୁ,
ଖାଦ୍ୟ ଆଣେ ଲୁଣ୍ଠିଥାନ୍ତି ଭାରତକୁ ।

ଛଳେ ବଳେ କଉଶଳେ ଲୁଟିବାର,
ନାମ ତା'ର ବିନା ଶୁଳ୍କରେ ବେପାର ।

ରେଲ, ତାର, ଡାକ, ଜାହାଜ ଚଳାଇ,
ଦେଶୀଙ୍କୁ ମୂଲିଆ ପଣରେ ଲଗାଇ,

ମାଲିକ ସମାନ ବସି ଉଚ୍ଚାସନେ,
ରଖିଛନ୍ତି ଡରାଇ କୋରଡ଼ା ଶାସନେ ।

ଆମକୁ ଜଗିବା ଲାଗି ଆମ ଧନେ
ଅଗଣା ଫଉଜ ସମ୍ପାଦ ଯତନେ,

ବିପୁଳ ବାହିନୀ ଖର୍ଚ୍ଚ ଶିରେ ଚାପି
ଦରିଦ୍ର ପ୍ରଜାଙ୍କ ରକ୍ତନଏ ମାପି ।

ଚର୍ମସାର ହାଡ଼ କଙ୍କାଳର ମାଳା,
ଛପୋଲିସ ପଦର ଗୋଇଠାର ଜ୍ୱାଳା ?

ଭୋକ ଶୋଷି ଉଣି ରହି ଅକାତରେ
ଟିକସ୍ ବସାଇ ସ୍ୱଦେଶୀ ମାଲରେ,

ମୁଣ୍ଡ ମାର ତା'ର କଲେଟି ସଂହାର,
ଦେଲେ ବିଦେଶୀଙ୍କୁ ଭାରତ ବଜାର ।

ଏକା ଲୁଟିବାରେ ନ ହେଲା ସନ୍ତୋଷ,
ସବେ ମିଳି ଲୁଟିନେଲେ ଧନକୋଷ ।

ଜାପାନ, ୟୁରୋପ, ଆମେରିକା, ଚୀନ—
ମାଲ କଣି ଆମେ ହେଲୁ ଧନହୀନ ।

ଜାହାଜରେ ବନ୍ଧନେଲେ ଆରପାର,
ଶୂନ୍ୟ ହେଲା ଆମ ସୁନାର ଭଣ୍ଡାର ।

କାଗଜର ନୋଟ ସିନ୍ଦୂକ-ସମ୍ବଳ,
ଦୁଇଅଣା ଦାନକଅ। ଅର୍ଥବଳ ।

ବେପାର ବଣିଜେ ନାହିଁ ସ୍ୱାଧୀନତା,
ବିଦେଶୀ ବଣିଆ ଗୃହ ଶିଳ୍ପହନ୍ତା ।

ତନ୍ତୀଙ୍କ ଆଙ୍ଗୁଠି କାଟି ମାଞ୍ଚେଷ୍ଟର--
ଲୁଗାରେ ଆମର ଘରଦେଲେ ଭରି ।

ହେବ ଆମ ଘର ଲୁଣି ପାରିବାରେ,
ଗଙ୍ଗାଧର ଭରି କୋମଳ କପାରେ,

ସେଠାଂ ଧାନ, ମୁଗ ଗହମ, ଅପାର,
ତହିଁରେ ଗୃହକଥା ଜପାମାଳ ସାର ।

କରଦଆ ପୁଣି ସ୍ୱତ୍ୱ ଚମତ୍କାର,
ଖଜଣା ସୁଝିବା ଲାଗି ରୋଜଗାର ।

କର' ଚା' ଗୋଲାମି, 'ଭର' ଚା' ଭଣ୍ଡାର,
ଆମ ଶକ୍ତେ ନାହିଁ ଆମ ଅଧିକାର ।

ଲିଭର୍ ପୁଲ୍ ଲୁଗା ପେଡ଼-କଉଡ଼ରେ,
ନ କିଣିଲେ ଆଜ ଗତି ନାହିଁଟିରେ ।

ଆମରି ସାଗର, ଆମରି ଚିଲକା,
ଆମ ଦ୍ରବ୍ୟ ଆମେ କରୁଁ ନିତି ଭିକ୍ଷା ।

ଲୁଣ କେ ମାରିଲେ ଜେଲ ଜୋରିମାନା,
ଆମେ ମୂଲ୍ୟେ ଲାଗୁଁ ଚଙ୍କ କାରଖାନା ।

ପାଟ କଳକ୍ଷେତେ, ଚାହା ବଗିଚାରେ
କୁଲିଙ୍କ ଜୀବନ ବିତେ ଅତ୍ୟାଚାରେ ।

ମେଲେରିଆ, ଶୋଥ, ଡେଙ୍ଗୁ, କଳାଜ୍ୱର,
ଗରିବ କୁଲିଙ୍କ ଚିର ସହଚର ।

ଭାରତ ଭାଗ୍ୟରେ ଖାଲି କୁଲିଗିରି,
ଅଳ୍ପ ବେତନର କିରାଣୀ ଚାକିରି ।

ଆଉ କ ଭାରତେ ଅଛି ସୁନା ଚାନ୍ଦି,
ନେଲେ ଭଣ୍ଡାରକୁ ନାନା ଫନ୍ଦି ବାନ୍ଧି ।

ଆମ କୁଳଲକ୍ଷ୍ମୀ ଆଭରଣ ହୀନା,
ସରିଲଣି ପୂର୍ବ ରୂପର ଗରିମା ।

ସୁନା ଅଙ୍ଗଦରେ ପିନ୍ଧେ କାଚଚୁଡ଼ି,
ମଣିମୁକ୍ତା ଛଡ଼ା ନ ଜାଣେ ଦମ୍ବଡ଼ି ।

ପାଟ ପୀତାମ୍ବର ଝୀନ ବସନର,
ରଙ୍ଗ ଚକମକ କଥା ସପନର ।

ନାହିଁ ସେ ପଦ୍ମିନୀ, ସେ ନୁରଜାହାନ,
ଦେବତାଏ ଯା'ଙ୍କ ରୂପେ ହତଜ୍ଞାନ ।

ନ ସଜାଏ ଆଉ ଗୃହୁ ହର୍ମ୍ୟପୃଷ,
ସ୍ୱଦେଶୀଙ୍କ କର-ଶିଳ୍ପର ସୁଭୂଷ ।

ବିଦେଶୀ ଦରବ-ପଦାର୍ଥରେ ଭରା,
ଆମ କୋଠାଘର ସିନ୍ଧୁକ ପେଟରା ।

ଚୀନାମାଟି, ଆଲମୋନିଆ ବାସନ,
କଂସା, ପିତଳକୁ କଲା ନିର୍ବାସନ ।

କପର ଭୁଲିବା ଦେଢ଼'ଶ ବର୍ଷର,
ଗୋଲାମୀ ସାରିଲା ତେଜ ମାନବର ।

ବଳବୀର୍ଯ୍ୟ ଶିକ୍ଷା ସ୍ୱାସ୍ଥ୍ୟ ଧନହରା,
ଘେରେ ଶାଳ ଅକାଳରେ ମୃତ୍ୟୁ ଜରା ।

ପ୍ରତାପ, ଶିବାଜୀ, ଆଜ ସେ ସ୍ୱପନ,
ବୀର ବଂଶଧର ଦାସତ୍ୱେ ମଗନ ।

ସିଗ୍ରେଟ, ଚଷମା, ବିଲାତି ପୋଷାକ,
ନଭେଲ, ସିନେମା, ଟେରିକଟା ବାଙ୍କ,

ସୁରାପାନ ସାରଦେଲ ସୁବାଗଣେ;
ବୁଢ଼ା ବୁଢ଼ିଗଲେ ଅଫିମ ସେବନେ ।

ଏତ ସେ ଉଟକ୍ର ଗୋବଚମ ବନ୍ଧି,
ଅସ୍ୱାଧୀନତାର ପରିଣାମ ଏହି ।

ଏ ଦେଶେ ଆମର ଭୂଇଁ ଭୂଖଣ୍ଡିକ,
ନାହିଁ କରାୟତ୍ତ, ଜନ୍ମଭୂମି ଧିକ୍ ।

କହ କେଉଁ ମୁଖେ, ତାକୁ ଅଳନ୍ତିକ,
ଏହାଠାରୁ ମୃତ୍ୟୁ କ ଦୁଃଖ ଅଧିକ ?

ବନ୍ଧୁ ଦତ୍ତ ଆମ ଜନ୍ମ ଅଧିକାର
ହରଇ ଆରତେ କରୁଁ ହା' ହା'କାର ।

ନିଜ ଅନ୍ନ ପାଣି ନିଜେ କିଣି ଖାଉଁ;
ଆପଣାକୁ ପୁଣି ମଣିଷ ବୋଲଉଁ ।

ଘରୁ ମାର୍ଜାରର ପରି ପରସ୍ପରେ,
ଦ୍ୱନ୍ଦ୍ୱ ସାଧି ମରୁଁ ଆତ୍ମୀୟ ଦ୍ୱେଷରେ ।

ଭାଇ ଭାଇ ମଧ୍ୟେ ଭେଦ ଉପୁଜାଇ
ବିଦେଶୀ ବସଇ ରାଜଗାଦୀ ପାଇ ।

ସୁନାର ଭାରତ କଲା ଛାରଖାର,
ବିଦେଶୀ ବଣିକ ଧୂର୍ତ୍ତ ବ୍ୟଭିଚାର ।

କେହି ନ ଭୂଲ ତା' କୋମଳ କଥାରେ,
ନ ଯାଅ ବିଶ୍ୱାସ ଶଠ ଦୋଷଣାରେ ।

ଦଗା ଦେଲା ଯେଉଁ ଶତ ଶତ ବାର,
ତା' ସଙ୍ଗେ ବିଶ୍ୱାସ ନାହିଁ ବ୍ୟବହାର ।

ମଣିଷ ବୋଲି ସେ ତୁମକୁ ନ ମଣେ,
କୌଶଳେ ବନାଏ ମାରେ ପଣେ ପଣେ ।

ହାତରେ ନ ମାରି ଭାତେ ମାରିବାର,
କୂଟନୀତି ତା'ର ଶାସ୍ତ୍ରର ପ୍ରଚାର ।

କାପୁରୁଷ ପଣେ ସେ ଶାନ୍ତି ଅର୍ଜନ,
ତା'ଠାରୁ ବରଞ୍ଚ ମୃତ୍ୟୁ ପ୍ରୟୋଜନ ।

ବଞ୍ଚି ମହାଭୋଗ କରି ସ୍ୱର୍ଗବାସ,
ଅର୍ଦ୍ଧମୃତ ଜୀବେ ନିତ ମୃତ୍ୟୁ ତ୍ରାସ ।

ଶୃଗାଳ ଜୀବନେ କି ଲୋଡ଼ା ଆମର,
ସିଂହପରି ପ୍ରାଣ ଟେକିବୁଁ ଏଥର ।

ଧର୍ମେ କର୍ମେ ସବୁ ଦେବୁ ଜଳାଞ୍ଜଳି,
ଦାସ ଧର୍ମ ମୁକ୍ତି ମନେ ନେବୁ କଳି ।

ଦେଶ ଆମ ଧର୍ମ କର୍ମ ଜପାମାଳି,
ଅରଣ୍ଠର ଚଣ୍ଡ ଜୀବନ ସଙ୍ଗାଳି ।

ସେନାପତି ତବ କଲେଣି ଆହ୍ୱାନ,
ଆସ୍ତୁ ଅରପଣେ ହୁଅ ଆଗୁଆନ ।

ବାଜ ଉଠିଲାଣି ରଣତୂର୍ଯ୍ୟ, ଦେଖ,
ନ ଅନାଅ ଆଉ ପଛପଟେ ଫେରି ।

ଆଜ ରଣାଙ୍ଗନେ ଶୁଭ ପରାକ୍ରମୀ,
ତୁମ କ୍ରୋଧେ କେହି ନ ପାରିବ ଦମି ।

ମହାଯୋଗୀ କର୍ମବୃନ୍ଦ ଗାନ୍ଧୀଙ୍କର,
ଫଳିବ ତପସ୍ୟା, ମୁକ୍ତ ଭାରତର ।

ନୀଳାକାଶତଳେ ତୁମ ରକ୍ତାଙ୍କିତ,
ଉଡ଼ିବ ପତାକା ଜୟ ସୁନିଶ୍ଚିତ ।

ଅନ୍ୟାୟ ଶାସନ ତରବାର ମଣ୍ଡା,
ଅକାତରେ ଶିରେ ନ ପାତିବ ବନ୍ଧୁ ।

ଅଛି କି କୃତ୍ରିମ ଅନ୍ୟାୟର ସୀମା,
କେ କଳିବ ତା'ର ଅନ୍ୟାୟ ମହିମା !

ମହାରଣେ ଢାଳିଥିଲୁଁ ଯେ ଶୋଣିତ
ତା'ର ପ୍ରତିଦାନ ଦେଲେ ସେ ଉଚିତ ।

ଦେଇଥିଲୁଁ ଗଣି ଦରଉଡ଼ି ଫିଟାଇ,
'ରେଗୁଲେଟିଂ ଆକ୍ଟ' ଦେଲା ତା ସୁଝାଇ ।

କାଲୁ ଯେ ତହିଁ ଦେ ବନ୍ଧୁ ବ୍ୟବହାର,
ଅର୍ଡିନାନ୍ସ ବେଣୁ ଜାରି ବାରମ୍ବାର ।

ସାମାନ୍ୟ ସନ୍ଦେହେ ସଦ୍ୟସ୍ ଗ୍ରେପ୍ତାର,
ଯୁବକ ଶକ୍ତିକୁ ପେଷେ କାରାଗାର ।

ଅଣ୍ଡେଗ୍ୟୁ ରେମସ୍‌ଫୋର୍ଡ଼ ଶାସନ ଯନ୍ତ୍ରର,
ପିଲଙ୍କୁ ଠାକୁଆ ଭଣ୍ଡିବା ପ୍ରକାର ।

ଦ୍ୱୈତ ଶାସନର ଲୀଳା ଦେଖିଲେ,
ଦ୍ୱିମନା ମୂର୍ଖଙ୍କୁ ତାନେ ନଗୃହିଲେ ।

ତା'ପରେ ପେଶିଲେ ଦଳେ କମିଶନ
ମଧ୍ୟର ଭକ୍ତିଆ ନୂତ ସାଇମନ ।

ଶାନସଭ୍ୟା ପଣ୍ଡି ଭାରତେ ବୁଲିଲେ,
ଆମ ସ୍ୱାମଧନେ ମଣ୍ଡଳ ମାରିଲେ ।

ତାଙ୍କ ଆଗମନେ ପ୍ରଥମ ଶୀକାର,
ଲାଲ ଲଜପତେ ଲଠିର ପ୍ରହାର ।

ଭୁଲୁଁ ନ ଭୁଲୁଣୁ ଲାହୋର, ମିରଟେ,
ଅଠଳ ଯୁବକେ ଛଳନା କପଟେ ।

ଚକ୍ରପନ୍ତ୍ର ବୀନା ଧର ବନାଟେବାଷ୍ଟେ
ଭରତର ପାପ କର୍ମାବଳେ ଶେଷେ ।

କଠିନ ହାଜତ ଅବା କାରାବାସ
ଯନ୍ତ୍ରି ଏ ଦେଶର ଶାନ୍ତି କଲ ନାଶ ।

ଜାଲିଆନାବାଗ କରୁଣ କାହାଣୀ
ଡାୟାର, ଓଡାୟାରର କମାଣ ଝଣାଣୀ ।

ମୋ ପିଲଙ୍କ ଗୁଳିଫଟା ଦେହଛଟା,
ଶ୍ୱାସରୁଦ୍ଧ ମୃତ୍ୟୁ ଶୋଷ ହଟା ହଟା ।

ମଧ୍ୟ ପ୍ରଦେଶରେ ଦୁର୍ଭିକ୍ଷ ଭୀଷଣ,
ବଙ୍ଗ ଓଡ଼ିଶାର ବଢ଼ିର କଷଣ ।

ଲାହୋରର ଘୋର କ୍ରୂର ଅତ୍ୟାଚାର,
'ରାଜଦ୍ରୋହ ଛଳେ ଯୁବକେ ଗ୍ରେପ୍ତାର ।

ଷଜପୁ, ପଞ୍ଜାବ, ଅନଶନ ବ୍ରତ—
ମୃତ୍ୟୁ କଥା ମନେ ନୟୁଚ ଜାଗ୍ରତ ।

ଦେଶବନ୍ଧୁ, ଗୋପବନ୍ଧୁ, ଲଜପତ
ଯା' ଧର୍ମଶାସନେ ଅକାଳେ ନିହତ ।

ଗାନ୍ଧି, ଜହରଲାଲ, ରାଜେନ୍ଦ୍ର, ସୁଭାଷ,
ପଟେଲ, ସତ୍ୟପାଳ କଲେ କାରାବାସ ।

ଦେଶାନ୍ତରୀ ରାସବିହାରୀ, ମହେନ୍ଦ୍ର,
ହରଦୟାଲ, ସାବର କର, ଅରବିନ୍ଦ ।

ପୁରୁଷ କେଶରୀ ଭାରତ ରତନ
ଟମ୍ପନର ତଳେ ଚୁଷ ମହାଜନ ।

କଳା ବୋଲି ହେୟ, ଘୃଣ୍ୟ ଦସ୍ତ୍ରଦାନେ
କଳା ମାଚ, ଶୂକର, ତସ୍କର ସମାନେ ।

କଳା ଦେହେ ଆମ ନାହିଁକି ରକତ,
ଏତେ ଉତ୍ପାତରେ ନ ହେବ ତପତ ?

ଦକ୍ଷିଣ ଆଫ୍ରିକା କଳାଙ୍କ ନିଗ୍ରହ
ଶୁଣିଲେ କାହାର ନ ବହିବ ଲୁହ !

ଜେନେରାଲ ସ୍ମଟ୍ ନିଷ୍ଠୁର, ନିର୍ଦ୍ଦୟ
ପକ୍ଷପାତଚାର, ହିଂସାର ବିଗ୍ରହ ।

କଳାଙ୍କୁ କଲ ସେ କେତେ ଅପମାନ,
କଳା ତା ନୟନେ କୁକୁର ସମାନ ।

କୁଲି ଜାତି ପୁଅ ଗାନ୍ଧି ମହାତ୍ମାଙ୍କୁ
କେତେ ଦୁଃଖ ଦେଲ, ଅଜଣା କାହାକୁ ?

ଡ୍ୟାମ୍ ନେଟିଭ୍ ବୋଲି ତା'ର ଭାଇଗଣ,
କରନ୍ତି କଳାଙ୍କୁ ସ୍ନେହ ସମ୍ଭାଷଣ ।

ସେ କଳା ପୁତଳି ପୂଜାର ଅଭାରେ
ସନ୍ତୁଷ୍ଟନ୍ତି, ତାଙ୍କ ଆତ୍ମା ତାରବାରେ ।

ଆମ ଅର୍ଥ ଧନ କରେଣ ଖରଚ
ବସାନ୍ତି ପାଦ୍ରୀଏ ମିଶନ, ଚରଚ ।

ଏତେ ଜ୍ଞାନଧନ ଦେଲେଣି ଅଜାଡ଼ି,
ଜ୍ଞାନମୁଖେ ହିନ୍ଦୁସ୍ଥାନେ ଚଲେ ମାଡ଼ି ।

ଶତକରା ପଞ୍ଚାନବେ ନିରକ୍ଷର,
ନ୍ୟାୟଶାସନ ଏ ଦେଢ଼ଶ' ବର୍ଷର ।

ତାଙ୍କ ବୋଲି, ତାଙ୍କ ଢଙ୍ଗ, ରୀତିନୀତି
ଶିଖି ବଦଳିବ ବାହାରଙ୍କରେ ବୃତ୍ତି ।

ଏଣୁ ମରମେ ତ ଧରମ ପ୍ରଚାର,
ହିନ୍ଦୁ ଅନ୍ଧବୋଲି କରନ୍ତି ପ୍ରଚାର ।

ମୂର୍ଖ ମୁସଲମାନ, ବୌଦ୍ଧ ନାସ୍ତିକର,
ଆମେ ଏକା ଖାଣ୍ଟି, ଜଗତଯାକର ।

ଜଣା ତ ଯାଇଛି ହାତା ପଣ ଗୁଣ,
ହରି ନେଲେ ଅସ୍ତ୍ର, ଅନ୍ନ, ପାଣି, ଲୁଣ ।

ମନୁଷ୍ୟ ଜନ୍ମରୁ ତାଡ଼ିବେ ଏବାର,
ବୁହାଇ ଭାରତ ତପ୍ତ ରକ୍ତଧାର ।

ଧର୍ମାଦର୍ଶଧାରୀ ଭଣ୍ଡ ପ୍ରବଞ୍ଚକ
ଅଣ୍ଟିରେ ଥାଇଣ ଗଣ୍ଠିକଟା ଠକ ।

ମହାରାଣୀ କରିଥିଲେ ଯା' ଘୋଷଣା
ହୋଇ ରହିଲା ସେ ଅକ୍ଷର ରଚନା ।

ନ୍ୟାୟେ ଧର୍ମଜାତି ବର୍ଣ୍ଣ ନିର୍ବିଶେଷେ
ପାଳିବେ ପ୍ରଜାଙ୍କୁ, କି ହୋଇଲା ଶେଷେ ?

ଆଖି ଦେଖୁଥାଇ ଅନ୍ୟାୟ ଗୋରାର
କଳା ଗୋରା କାର୍ଯ୍ୟେ ଭେଦ ବ୍ୟବହାର ।

ଉକ ଅଷ୍ଟାଳକା, ବଜୁଳ, ମୋଟର,
ବେତ୍ରଦଣ୍ଡ, ଚପ୍‌ରାଶି, ଅର୍ଦ୍ଧଳ ଗୃକର,

ପଦେ ପଦେ ଆଜ୍ଞାକାରୀ ଅନୁଚର,
ମାଗଣାରେ ମିଳେ ସେବକ ଡାକ୍ତର ।

ଗୋଡ଼େ ଗୋଡ଼େ ତାଙ୍କ ବଜାଇ ସଲାମ,
ଅଳପ ଖଟଣି, ବ୍ୟସନ, ଆରାମ ।

ଶିକାର ଖେଳିବା ଲାଗି ବନ୍ଦୋବସ୍ତ,
ସବୁ ସୁବିଧାରେ କରନ୍ତି ସେ ଗସ୍ତ ।

କାର୍ଯ୍ୟକାରୀଠାରୁ ଭତ୍ତବନ୍ଧ ପାଏ,
ସାରା ଖରଚଟା ସରକାର ଯୋଗାଏ ।

ଗୋରା ତାଙ୍କ ଚମ ବଳତରେ ପାଶ୍,
ଫର୍ମାସୀ ଯୋଗାଇ ମରେ କଳା ଦାସ ।

ଚର୍ଦ୍ଧି ଉଚ୍ଚ ଉଚ୍ଚ, ବେତନ ଅଗଣା,
ଖଞ୍ଜାଏ ଦରିଦ୍ର ପ୍ରଜାଙ୍କ ଖଜଣା ।

ଚର୍ଦ୍ଧି ପୁଣି କେତେ ଗୋରା ବୁଟ୍‌ଚଟା,
ଆମରି ଖାଇଣ ଆମ ଛଣ୍ଡିକଟା ।

ଗୋଦରା ଗୋଡ଼ର ଖୁଷଣ ଫୋଟକା,
ମିଛ ଚଟ୍‌ଚାଲ ଧୋବ ପାଣିପାକ ।

'ଉତ୍କୋ' ମାଗିବାକୁ ପ୍ରତ୍ୟେକ କଥାରେ,
ଆପଣା ଜାତିର ଦାଣ୍ଡ ସାଧିବାରେ ।

ହାଁକା ଦଳ କେତେ ଗୋତ୍ର ଅନୁଗତ,
ତାଙ୍କ ପାପେ ବୁଡ଼ି ରହିଛି ଜଗତ ।

ଯାବତ୍ଚନ୍ଦ୍ର ଦିବାକର ବଂଶଜବେ,
ବିଶ୍ୱାସ ଘାତକେ ଦୁର୍ନାମ ଅର୍ଜିବେ ।

ପରାଧୀନ ତାଙ୍କ କୁଚକ୍ର ଫଳରେ
ଭାରତ ଶୃଙ୍ଖଳ ପିନ୍ଧିଛି ପଦ୍ମରେ ।

ଏପରି ଶୁଗାଳେ ଶତ ନମସ୍କାର,
ଯଦୁକୁଳ ଧ୍ୱଂସୀ ଶାମ୍ବ ଅବତାର ।

ଏହାଙ୍କ ପଛକୁ ପୁଣି ବଳୀୟାର,
ଅଳସ ବିଳାସୀ ରାଜା ଜମିଦାର ।

ମଦ, ବାରାଙ୍ଗନା, ସିନେମା, ମୋଟର,
ନାଚ, ଲଟଭେଜ, ଫଳାଡ଼ ଉପର ।

ଦେହେ ବାସ କୋଟି ଉତ୍କଟ ବ୍ୟାଧିର,
ତେଜବୀର୍ଯ୍ୟ ଶୂନ୍ୟ ଦାସ ଔଷଧିର ।

ସୂର୍ଯ୍ୟଚନ୍ଦ୍ର ବଂଶୀ କ୍ଷତ୍ରିୟ ଏମାନେ,
ଦେବତାଏ ଡରୁଥିଲେ ତାଙ୍କ ନାମେ ।

ହରିଶ୍ଚନ୍ଦ୍ର, ରାମଚନ୍ଦ୍ର, ଯୁଧିଷ୍ଠିର—
ରୁଧିରେ ଭରା କ ଯାଙ୍କର ଶରୀର !

ଶିବାଜୀ-ପ୍ରତାପ ପୁରୁଷ ଉତ୍ତମ,
ସିଂହ-ଗଜପତି-ଗୋଷ୍ଠିରେ ଜନମ ।

ହୀନ ଦୃଷ୍ଟି ପଡ଼ି ବିଳାସ-ପଙ୍କରେ
ଲେଟି କ୍ଷତ୍ରୀନାମ ଲେପି କଳଙ୍କରେ ।

ପ୍ରଜାରକ୍ତ ଶୋଷି ବୋଲନ୍ତି ପାଳକ,
ବେଠି ଖଟି ପ୍ରଜା ପୀଡ଼ିତ କାଳକ ।

ଦାଢ଼ିହୀନ ଖଣ୍ଡା ଖଣ୍ଡିକ ଭୂଷଣ,
ଏହିମାନେ ଗୁହଦଶନ୍ ଲକ୍ଷଣ ।

ନଟକୁଟପଟୁ ବୁଟନ୍ କୁମାରେ,
କାଠ ପିତୁଳାଙ୍କୁ ଖେଳାନ୍ତି ମଜାରେ ।

ତାଙ୍କୁ ଦେନ ସବୁ ଶାସନ ତାମସା,
ଉପାଧି ବା ପଦବୃଦ୍ଧିର ଲାଳସା ।

ସ୍କୁଲ୍ କଲେଜରୁ କାଉନ୍‌ସିଲ୍ ଯାଏ
ଇଂରାଜ ଏହାଙ୍କୁ ମଇନେ ନଚାଏ ।

ରାୟ ବାହାଦୂର, ଖାଁ ବାହାଦୁର-
ପଦଟି ଆଶାରେ ହଜାରେ ହଜୁର ।

ଜଗତ ଅସ୍ତିତ୍ୱ ଥିବା ପର୍ଯ୍ୟନ୍ତ,
ବୃହାନ୍ତ ଏମାନେ ଗୋରାଙ୍କ ରାଜତ୍ୱ ।

ଚୋର ଭାଇ ଗଳାକଟା ସରଦାର,
ଶତ୍ରୁ କର ଯାଙ୍କୁ ଦୂରରୁ ଜୁହାର ।

ହାୟ ଏତେ କାଳ ଏ ଘୋର ଦୁର୍ଗତି,
ଭ୍ରାତୃହତ୍ୟା ଥିବ ଭାରତେ ଜାଗ୍ରତ !

ତେଜ ପୁରୁଷଙ୍କ ମନ୍ଦଙ୍କ ଗୌରବେ,
ବର୍ଜିବେ କେତେଦିନ ଏ କୌରବେ ?

ଲଭି ସରକାର ତଳେ ଅନୁଗ୍ରହ
ପାପ ଜାତିଟାକୁ କଲେ ଯେ ନିଗ୍ରହ ॥

ଏହି କୁଳାଙ୍ଗାରେ କରି ଜନ୍ମଦାନ
ହିନ୍ଦୁସ୍ଥାନ ରହିଗଲେ ହୀନମାନ ॥

ଦେଶ ଲୁଣ୍ଠି ଖାଇ ଗାଇ ପରଗୁଣ
ଯାଉଛନ୍ତି ଜନ୍ମଭୂମି ସନମାନ ॥

ଏହି ମାନଙ୍କର ଭୋଗି ପାପଫଳ
ଭାରମାତା ବେଦଭୂମି ହୀନବଳ ।

ନିର୍ବୀର୍ଯ୍ୟ ନରହନ୍ତ ପଦାନତ ସ୍ଥିତ
ଶାନ୍ତ ମନ୍ତ୍ରଧାୟୀ ଚିର ପରାଶ୍ରିତ ।

ହୁଏ ହେବେ ଥିଲେ ରାଜା ମୁସଲମାନ
ଏଡ଼େ ଖର୍ବ ନଥିଲା ତ ହିନ୍ଦୁସ୍ଥାନ !

କରୁଥିଲେ ରଣ ସମାନେ ସମାନ,
ମୋଗଲର ସହ ବୈଶ୍ୟ ରାଜସ୍ଥାନ ।

ଦର୍ପୀ ଔରଂଜେବ ଦମ୍ଭୀ ଶିବାଜୀର
ସମପ୍ରତି ଦ୍ୱନ୍ଦୀ ବେନ୍ଧ ମହାବୀର ।

ବେଧର ସ୍ୱ ଷାତ ଖୋଲ୍ଲ ତରବାରେ
ବୀର ପନ୍ଥ ମରବାରେ ମାରବାରେ ।

ଆଜ କ ଦେଖୁଛ ହିନ୍ଦୁସ୍ଥାନ ଭାଇ,
ହିନ ଭାରତୀୟ ଶାନ୍ତି ମନ୍ତ୍ର ଗାଇ ।

ଭକ ଶ୍ରୀ-ମୂଲ୍ୟା-ଗୋଲ୍ମର ଦେଶ
ନାମେ ଚଉଦିରେ ଲଭେ ଘୃଣା ଦ୍ୱେଷ ।

ଏ ଶାନ୍ତି ଶାସନେ ସେ ଅସ୍ତ୍ର ଆଇନ
କଲା ପୁରୁଷଙ୍କୁ ଅବଳାଠୁଁ ହୀନ ।

ଦୂରେ ଥାଉ ହାତ ହତିଆର କଥା,
କଟାରୀ ଖଣ୍ଡିକୁ ନାହିଁଟି ବ୍ୟବସ୍ଥା ।

କପର ବାରଣ୍ଡି ଜାଗିବ ଗୃହରେ,
ଚୁଷ୍ଟ ଶସ୍ତ୍ରେ ଯଦ୍ଦ ନଥିବ ପାଖରେ ।

କୃପାଣ ଧାରଣେ ଶିଖ୍ ଯାଏ ଜେଲ,
ଦେଖ ଏ ଶାନ୍ତି ସୁନା କବା ଖେଲ ।

ପୁରୁଷଙ୍କ ହତ ଯେ ଶାସ୍ତ୍ର ସାଧନ,
ସେ ଶାସ୍ତ୍ର ଆଗମେ ନାହିଁ ପ୍ରୟୋଜନ ।

ଶତଧିକ ଏହି ଶାସ୍ତ୍ରନାମଧାରୀ
ବେପାର-ଚତୁର ଧୂର୍ତ ଅତ୍ୟାଚାରୀ ।

ଗୁପ୍ତାଘାତ ପଟୁ କୂଟ କପଟିଆ
ଉପରେ ଯା' ଗୋରା ରଙ୍ଗ ପଟୁଦିଆ ।

ଜୁଆଚୋରର ଶାସନକୁ, ନମସ୍କାର,
କଲା ଭାରତର ଶକ୍ତି ସଂହାର ।

ମୁଣ୍ଡ ଟେକିବାର ନାହିଁ ଆଉ ବଳ,
ହାଡମାଂସ ପେଷା ଚଟଣ ଏ କଳ ।

ଏ କଳ କବଳେ କେତେ ହେଲେ ନାଶ,
କେ ଦେବ ତାଙ୍କର ହିସାବ ନିକାଶ ?

ସଢ଼ୁଛନ୍ତି କାରାଗାରେ ତୁମ୍ଭ ଭାଇ
ପ୍ରାଣ ପଣ କରି ଜନ୍ମଭୂମି ପାଇଁ ।

କେହି ରୋଗ ଶେଷେ, ନିସ୍ତେଜ କେ ଶୋକେ,
ତନୁ ତେଜି କେତେ ଗଲେ ସ୍ବର୍ଗଲୋକେ ।

ହଣ୍ଡି ସହ ଗଲ ସମ୍ରାଟ କାବୁଲ
ମୋହା ମୁଜଫର୍, ଭଗତ୍, ନଜରୁଲ୍ ।

ମାତୃଭୂମି ପ୍ରେମ ତାଙ୍କ ଅପରାଧ,
ସ୍ୱର୍ଗ ଗରୀୟସୀ ତା ଭକ୍ତିରେ ବାଦ ।

ଜାତୀୟତା ମୁକ୍ତି ଦେଶର ମମତା,
ହେଲ ଭାରତୀୟ ଯୁବ ପ୍ରାଣଦଣ୍ଡା ।

ଏତେ ହୀନ ଆଜ ଆମର କପାଳ,
ମାତୃଭୂମି-ପ୍ରୀତି ଆମ ପ୍ରତି କାଳ ।

ଦେଶ ପ୍ରେମ ଲାଗି ନର ପାଏ ପୂଜା,
ଆମର ଶାସନ ଓଲଟା ଅବୁଝା ।

କଳାପାଣି, ଫାଶିକାଠ, କାରାଗାର,
ଦେଶପ୍ରେମୀଙ୍କର ଚିର ପୁରସ୍କାର ।

ସେହି ପୁରସ୍କାର ତିଳକ, ଗୋଖେଲ,
ପୂର୍ବେ ଲଭିଥିଲେ, ଗାନ୍ଧି ତେଣୁ ଜେଲ ।

ଧର୍ମ ଅର୍ଜିବାକୁ ଗାନ୍ଧି ବ୍ରତ ସର,
ଲକ୍ଷ ଲକ୍ଷ ଯୁବା ଜେଲ ଦାଅ ଭର ।

ଭାରତ ଗୋଟାକ ବଡ଼ କାରାଗାର,
କୋଣେ କୋଣେ ଉପଦ୍ରବ ଅତ୍ୟାଚାର ।

ଏଣିକ କ ଭୟ ଜେଲ୍ ନିର୍ବାସନେ,
ଏଣିକ କ ଭୟ ମୃତ୍ୟୁ ଅନଶନେ ?

ସବୁ ସରିବ, ଏ ଭାରତର ହାଡ଼
ନ ଭଙ୍ଗେ ସହଜେ, ଏ ଦୃଢ଼ ପାହାଡ଼ ।

ହିମାଳୟ ପରି ଅଚଳ ଅଟଳ,
କୋଟି କୋରଡ଼ାରେ ନହେବ ଦୁର୍ବଳ ।

ମହାମେରୁ ପରି ହୋଇଥିବ ଛିଡ଼ା,
ଦେଉଣୁ ବଇରୀ ଶତ ଦୁଃଖ ପୀଡ଼ା ।

ଶତ ଶତ ଯୁଗେ ସହସ୍ର ଚାଢ଼ନେ,
ମୂଳ କି ଉପାଡ଼ି ପାରିଲେ କେ ଜଣେ ?

ମହାବୋଧି ବଟ ଅଚ୍ଛେଦ୍ୟ, ଅଜର,
ସର୍ବଂସହା ଭୂମି ଅକ୍ଷୟ ଅମର ।

ସେହି ଭୂମି କୋଳେ ଜନମ ତୁମର,
ରକ୍ଷା ଲାଗି ବେଗେ ହୁଅ ତତ୍ପର ।

ଉଠ ରାଜପୁତ, ପଞ୍ଜାବୀ ଓଡ଼ିଆ,
ଶତ ରଣକ୍ଷେତ୍ରେ ହୋଇଥିଲ ଠିଆ ।

ଉଠ ମରହଟ୍ଟା, ଗୁର୍ଖା ବଳବାନ,
ମାନ୍ଦ୍ରାଜୀ, ବଙ୍ଗାଳୀ, ସିନ୍ଧି, ମୁସଲମାନ ।

ଗୁଜରାଟୀ ଯା' ବର ତୋଳ ଜୟକେତୁ
ବାନ୍ଧିଲ ଭାରତବକ୍ଷେ ଦମ୍ଭ ସେତୁ ।

ସାବର ମନ୍ତର ନର୍ତ୍ତକ ସେନ୍ଦକ,
ଛଠ ଘରଚର ପୂଜକ ନର୍ତ୍ତକ ।

ଆରମ୍ଭିବେ ମହାଶାନ୍ତର ସମର,
ଆଗେ ଆଗେ ଗୁଲଛନ୍ତ ଯୋଗୀବର ।

ଗଳିତ ଦଶନ, ପଳିତ ଶରୀର,
ଜ୍ୟୋତି ଝଳେ ଅଙ୍ଗେ ସହସ୍ର ମିହିର ।

ବ୍ରହ୍ମା ବିଷ୍ଣୁ ମହେଶ୍ୱର-ତେଜଧାରୀ,
ଖଦଡ଼ ଶୋଭିତ ପୂତ ବ୍ରହ୍ମଚାରୀ ।

ଦକ୍ଷିଣ ଶ୍ରୀକରେ କରୁଣା କଲ୍ୟାଣ,
ବାମେ ପାନବାଣ ଅରଛ ମହାନ ।

ନେତ୍ରେ ସୁରପ୍ରଭା, ଦୃଷ୍ଟି ଭଗବନ୍ତ,
ପଦଭରେ କମ୍ପି ଉଠେ ବସୁମତୀ ।

ନରମୂରକ୍ତରେ ନଜେ ନାରାୟଣ
ଭକ୍ତ, କରିବେ ସେ ଭୂ-ଭାର ହରଣ ।

ତାଙ୍କ ଆହ୍ୱାନରେ କେ ରହିବ ଭୂମି,
ମୋହନ ଡାକେ କେ ରହିବ ନଜମି ?

ଥାଉ ଏ ଶରୀରେ ସହସ୍ର ପରାଣ,
ଅର୍ପଣ ଲାଗି ହେବେ ଆଗୁଆନ ।

ପଛ ଘୁଞ୍ଚା ଆଜ ନାହିଁ ଏକ୍ଷଣି,
ବନ୍ଧୁ, ଅବା ନଅ ମରଣ ବରଣି ।

ଗାନ୍ଧୀ ମନ୍ତ୍ର ଜପି ପ୍ରାଣ ଦିଅ ବଳ,
ଦେଶ ମାତା ପଦେ ରକ୍ତ ପୁଷ୍ପାଞ୍ଜଳ ।

ଆସ ଏକସଙ୍ଗେ ହିନ୍ଦୁ, ମୁସଲମାନ,
ଶିଖ, ପାର୍ଶୀ, ଜୈନ, ଇହୁଦୀ, ଖ୍ରୀଷ୍ଟାନ ।

ଘେନ ମୋହନର ଅରଟର ଚକ୍ର,
ଛେଦ ସେ ଅରଟେ ବିଦେଶୀୟ ନକ୍ର ।

ଭେଦ ସେ ଅରଟେ କୂଟ ଜାଲ ତା'ର
ତୁମ ଆତ୍ମବଳ ଦେଖୁ ଏ ସଂସାର ।

ତୁମ ଧୈର୍ଯ୍ୟ ତୁମ ଦୁଃଖ କଷଟିରେ
ପରଖି ପକାଅ ଏଥିର ବୀରେ ।

ହେଉ ତବ ହୃଦ୍ୟା ବଜ୍ରରୁ କଠିନ,
ଅଚଳ ଅଟଳ କୃଷ୍ଣାର୍ଜୁନ, ଭୀମ ।

ଭୀଷ୍ମବ୍ରତେ ବ୍ରତୀ, ଧର୍ମେ ଯୁଧିଷ୍ଠିର,
ସଫଳବ ତେବେ ମନ୍ତ୍ର ଶକ୍ତିନର ।

ଉଠ ଅପ୍ରତିମ ତେଜେ ଅରିନ୍ଦମ,
ଖର ଖରଖାପ୍ତ କେଶରୀ ବିକ୍ରମ ।

ପଛଘୁଞ୍ଚା ଆଜ ନ ଦିଅ ଏଥର,
ନିଅ ପରିଶୋଧ ମହୀଷ ଫଣୀର ।

କମ୍ପା ଜଗତଟା ଅବଜ୍ଞା ଦୃଷ୍ଟିରେ
ବନ୍ଧୁ ହେ ରହିବେ କେତେ ଦିନ କୋଟିରେ ?

ତା'ଠାରୁ ବରଞ୍ଚ ଝାସ ଏ ଅଗ୍ନିରେ,
ଯାଉ ଦେହ, ନାମ ରହୁଟି ମହୀରେ ।

ସ୍ୱରାଜ୍ୟ ଆମର ଜନ୍ମ ଅଧିକାର,
ନ ମିଳେ ଯଦି ତା' ଧ୍ୱଂସ ଆପଣାର ।

ଯାଧି ନଜହାତେ ମର ଏକାଥରେ,
ମିଶୁ ହିନ୍ଦୁସ୍ଥାନ ସିନ୍ଧୁ ଗରଭରେ ।

ତୁଙ୍ଗ ହିମଶୃଙ୍ଗ ପାରାବାର ଅଙ୍ଗେ
ଖସି ମିଶିଯାଉ ଅଗଣ୍ୟ ତରଙ୍ଗେ ।

ହେ ପୁରୁଷେ ଯଦି ନ ଉଠ ଏଥର,
ଆମେ ରଣବେଶେ ହେବୁଁ ଅଗ୍ରସର ।

ତୁମେ ଯଦି ଭୟେ ଦିଅ ପଛଘୁଞ୍ଚା,
ଆମେ ଚେଙ୍କି ଯିବୁଁ ଆମ ଲଜ ଲୁଚ୍ଚ ।

ଆମେ ନାରୀଗଣ କୋଣରୁ ବାହାରି
ଧରିବୁଁ ଅସହଯୋଗ ତରବାରି ।

ଶାନ୍ତ ସତ୍ୟାଗ୍ରହ ମହାରଣସ୍ଥଳେ
ଶୋଭାଯାତ୍ରା କରିଯିବୁଁ ଦଳେ ବଳେ ।

ଆମେ ଗରଭର ଶକତି ସହନ୍ତି,
ଭଳେ ଖ୍ରିତ ଚିତ୍ତେ ନାହିଁ ବୈରୀ ପ୍ରତି ।

ଦେଉ ସେ ଆମ୍ଭଙ୍କୁ ଧରି କାରାଦଣ୍ଡ,
କରୁ ସୁକୋମଳ ଦେହ ଖଣ୍ଡ ଖଣ୍ଡ ।

ଟାଙ୍ଗୁ ଥାଉ ଫାଶି ଖୁଣ୍ଟେ ଆମ ମୁଣ୍ଡ,
ଆମେ ସେ ନ ଡରୁଁ ଶତ ଅଗ୍ନିକୁଣ୍ଡ ।

ଉଠିବୁଁ ଗୋ ଚଣ୍ଡୀ ଚାମୁଣ୍ଡା ପ୍ରଚଣ୍ଡ,
ବୈରୀଶକ୍ତି ନଷ୍ଟେ ହେବ ଲଣ୍ଡ ଭଣ୍ଡ ।

ହେ ପୁରୁଷେ ଉଠ ପାର୍ଥ, ପୃଥ୍ୱୀରାଜ,
ଭୀମ, ରାମ, କୃଷ୍ଣ ସାଜ ସାଜ ସାଜ ।

ବାନ୍ଧିଦେବୁଁ ଶିରେ ରକ୍ତ ଶିରତାଜ,
ପିନ୍ଧାଇବୁ ପୂତ ହାତେ ରଣସାଜ ।

ସଞ୍ଚାରୁ ଦେଖାଉ ତେଜେ ଅଗ୍ନିଶିଖା,
ପତିବ୍ରତା ପଣ ଆମ ଜୟଟୀକା ।

ଆମ ଆଗେ କିଏ ଠିଆ ହେବ ଭବେ,
ତୁମ ସଙ୍ଗେ ଆମେ ମିଶିବା ଆହବେ ।

ଯାଉ ପଛେ ପ୍ରାଣ ଥାଉ ଦେଶମାନ,
ରଖି ଜାଣୁଁ ଆମେ ସ୍ୱଧର୍ମ ସମ୍ମାନ ।

ମୋହନ ପତାକା ତଳେ ମିଳିବାଇ-
ସଙ୍ଗେ ଗାନ୍ଧିନାମ ମହାମନ୍ତ୍ର ଧାୟୀ ।

ଅସହଯୋଗର ଏ ଶାନ୍ତ ସମରେ
ନେବୁଁ ତ୍ୟାଗ ହର୍ଷେ ବାସନା ପ୍ରାଣରେ ।

ପଦପଦେ ଧ୍ୟାନ, ଊର୍ଦ୍ଧ୍ୱେ ଭଗବାନ,
ସମ୍ମୁଖେ ମହାତ୍ମା ସ୍ୱଦେଶ ସମ୍ମାନ ।

ଭାରତର ନାରୀ ନୋହୁଁ ଆମେ ହୀନା,
ଷୋଳକୋଟି ଆମେ ନୋହୁଁ ଅତିକ୍ଷୀଣା ।

ଆମ ମାଆ ଥିଲେ ଲକ୍ଷ୍ମୀ, ଦୁର୍ଗାବତୀ,
ଆମେ କର୍ମ ଦେବୀ ପଦ୍ମିନୀ ସନ୍ତତି ।

ସାଧନ ଆମର ଭାରତ ଉଦ୍ଧାର,
ମହାଶକ୍ତି ଅସ୍ତ୍ରେ ମ୍ଳେଚ୍ଛର ସଂହାର ।

ହରିଲା ଯେ ଆମ ବସ୍ତ୍ର ଆଭରଣ,
ଆମ ମଣିମୁକ୍ତା କଲା ଯେ ହରଣ,

ଆମ ସନ୍ତାନଙ୍କୁ ଅର୍ଦ୍ଧ ଅନଶନେ,
ପେଷି ନାନା ଯନ୍ତ୍ରେ ମାରିଲା ଜୀବନେ,

ଯାହା ଯୋଗେ ଆଜ ହେଲୁଁ କାଙ୍ଗାଳମ,
ବସ୍ତ୍ର ବଣ୍ଟନଦାଣ୍ଡେ ବୁଲୁଁ ଭିକାରୁଣୀ,

ତା ଉଚିତ ଦଣ୍ଡ ବିଧାନ ପ୍ରୟାସେ,
ଯୋଖିଦେବୁଁ ଶକ୍ତି ଅରଟେ ଉଲ୍ଲାସେ ।

ଶକ୍ତିମୟୀ ହସ୍ତେ ଧରଣ ଅରଟ,
ସର୍ଗିବୁଁ ବଇଶୀ ଚଣ୍ଡକୂଟ ନଟ ।

ନିଷ୍ଠୁର ନଗଡ଼ ଫେଡ଼ିବା କାରଣ,
ଆମ ହସ୍ତେ ସେହି ହେବ ସୁଦର୍ଶନ ।

ପଶୁବଳ ନୁହେଁ, ଆସିବ ଶକତି,
ଆମେ ଯେ ଚର୍ଣ୍ଣିର ସଜୀବ ମୂରତି ।

ଧୈର୍ଯ୍ୟ, ଶାନ୍ତି, ଶକ୍ତି, କ୍ଷମା, ସତ୍ୟ, ସ୍ନେହ,
ସ୍ୱର୍ଗୀୟ ଭୂଷଣେ ଭରା ଆମ ଦେହ ।

ଅରଟ, ଅରଟ ଆମ ଜପାମାଳ,
ଅରଟରେ ସୂତା ଜୀବନ ସଙ୍ଗାଳ ।

ବିଦେଶୀ ବର୍ଜନ ଦୃଢ ବ୍ରତ ପାଳ,
ଦର୍ପୀଙ୍କ ଶାସନ ଯନ୍ତ୍ର ଦେବୁଁ ଟାଳ ।

ଗାଅ ହେ ଭଉଣୀ ଅରଟର ଗୀତ,
ଅରଟରେ ଆମ ସାଧନା ନିହିତ ।

, ସର୍ବବଳ ଚର୍ଣ୍ଣି କରିବା ନିଶ୍ଚିତ,
ଆଣିବା ଫେରାଇ ସୁବର୍ଣ୍ଣ ଅତୀତ ।

ଅଭିଟ ଆମର ଜୀବନ ସମ୍ବଳ,
ଅଭିଟ ଯେ ଏକା ଭାରତର ବଳ ।

କୋଟି ମେସିନ୍‌ଗନ୍, ଲକ୍ଷ ରଣତରୀ,
ଅସ୍ପୃଶ୍ୟ କମାଣ ନୁହେଁ ତାକୁସରି ।

ଅଭିଟକୁ କେହି କି ଅସ୍ତ୍ରେ ନାଶିବ,
ଅଭିଟ ପ୍ରଭାବେ ନଜେ ନାଶ ଯିବ ।

ଅଭିଟ ଭାରତ ହସ୍ତେ ସୁଦର୍ଶନ,
ଗାନ୍ଧିବେଶେ ଅରପିଲେ ନାରାୟଣ ।

ଖଦଡ଼ ବସନା ଅଭିଟ ସୁନ୍ଦରୀ,
ଜଗଦ୍ଧାତ୍ରୀ, ଜୟ ପାର୍ବତୀ ଶଙ୍କରୀ ।

ହେ ଭବାନୀ, ତୁମ ବରବେ ଭାରତ,
ହୋଇବ ମୁକତ, ହୋଇବ ମୁକତ ।

ଜୟ ରଣଚଣ୍ଡୀ ଅଭିଟ ଧାରଣୀ,
ହେ ମହାଭୈରବୀ ଭାରତ ତାରଣୀ ।

ଅରଣ୍ୟେ ପୂଜା ତୁମର ସାଧନା,
ଅରଣ୍ୟେ ଭାରତ ମୁକ୍ତି ଉଦ୍‌ଯାପନା ।

ଆଜ ହୋଲିଖେଳେ ଆସିଛୁ ଆହ୍ୱାନ
ଫଗୁଖେଳେ ଆଜ ନ ବଳେ ପରାଣ ।

ଢାଳ ସ୍ୱ-ରୁଧିର ଅବିର, ବଦଳେ
ନୂଆ ଫଗୁଖେଳେ ମାତିବା ସକଳେ ।

ଲୁଲେ ଲାଲ ହେବ ରଙ୍ଗ ଭାରତର,
ତହିଁ ଲୁଚିଯିବ ଲାଲ ବର୍ତ୍ତନର ।

ପୂର୍ବେ କହିଥିଲେ ରାଜା ରଣଜିତ୍,
ହେବ ସବୁ ଲାଲ ବ୍ରିଟିଶ ରଞ୍ଜିତ ।

ହିନ୍ଦୁସ୍ଥାନ ଭୂମି ସେହି ରକ୍ତମାନ,
ଧୁଆଅ ଶୋଣିତେ ଦେଶ ଅପମାନ ।

ବୀର ଦେଶରକ୍ଷ ଚରଣରକ୍ତ ବନା,
କେବେଁ ନ ଲିଭିବ ଏ ଗାଢ଼ ରକ୍ତିମା ।

‘ଦଅ ରକ୍ତ’ ବୋଲି ଶୁଭଇ ଟଙ୍କାର,
କମ୍ପାଇ ଦଅନ୍ତ ଗିରି ପାରବାର ।

‘ଜୟ ଜଗନ୍ନାଥ’ ଉଚ୍ଚେ ଦେଇ ଡାକ,
ଉଠ ଭାରତର ବୀରପୁତ୍ରଯାକ ।

ପୂର୍ବେ ‘ଆହେରିୟା’ ଉତ୍ସବେ ଯେସନେ,
ରାଜପୁତେ ଦୋଳ ପରବ ପାଳନେ ।

କରୁଥିଲେ ଦେଶ ସୌଭାଗ୍ୟ ନିର୍ଣ୍ଣୟ,
ତେସନ ଉଠହେ ତେଜ ଦେକା ଭୟ ।

ପ୍ରଭୁ ଜଗନ୍ନାଥ ସହାୟ ତୁମର,
“ମା ଭୈଃ” ନାଦେ ହୁଅ ଅଗ୍ରସର ।

ଘଣ୍ଟ ଘୋଡ଼ାଇଣ ରଖିବେ ଶ୍ରୀଧର,
ଜୟ ସୁନିଶ୍ଚିତ ନାଶଯିବ ଅରି ।

‘ଜୟ ଜଗନ୍ନାଥ’ ଉଚ୍ଚେ ଦେଇଡାକ,
ଆସ ଭାରତର ବୀରପୁତ୍ରଯାକ ।

ଆଜ ରଣକ୍ଷେତ୍ରେ ମହାସମ୍ମିଳନ
କର ବୀର ମୃତ୍ୟୁ ସ୍ୱାଧୀନତା ଧନ,

ସ୍ୱାଧୀନ ଭାରତ ନୀଳାମ୍ବର ତଳେ,
ସ୍ୱାଧୀନ ଜୀବନଯାତ୍ରା କୁତୂହଳେ ।

ସ୍ୱରାଜ୍ୟ ଆମ୍ଭର ଜନ୍ମ ଅଧିକାର,
କାମ୍ୟ ସ୍ୱାଧୀନତା ଧ୍ୟେୟ ଶ୍ରେଷ୍ଠସାର ।

ସେହି ଅଧିକାର ଲଭିବେଣୁ ଭାଇ,
ଚାଲ ଚାଲ ବୀରେ ଆଗକୁ ଅନାଇ ।

ସାବରମତିର ସ୍ୱରାଜ୍ୟ ସୈନିକ
ଉଠ ଭାରତର ଯୁବକ ନର୍ତ୍ତକ ।

ଉଠ ଭାରତର ବୀର ଯୁବଯାକ,
ସେନାପତି ଆଜି ଦେଇଛନ୍ତି ଡାକ ।



# ସେବିକାର ପ୍ରାର୍ଥନା

ତୁମ୍ଭ ପୂଜା ପାଇଁ ସଖା ହେ
ସଜାଡ଼ିଛି ବେଦିକା,
ଶୁଦ୍ଧ ଶାନ୍ତ ହୋଇ ବସିଛି
ଘେନା ତବ ସେବିକା ।

ତୁମ୍ଭେ ଆସ ଆସ ବୋଲି ତ
ନିତି ଡାକୁଛି କେତେ,
ଯେତେ ହେଉଅଛି ନିରାଶ
ପ୍ରେମ ବଢୁଛି ତେତେ ।

ତୁମ୍ଭେ ବଡ଼ ମୁଁ ତ ସାନ ହେ
ତୁମ୍ଭ ଆଦରେ ବଡ଼,
ତୁମ୍ଭେ ସଜ ଫୁଲ ସରି ହେ,
ମୁଁ ତ ଫୁଟନ୍ତା କଢ଼ ।

ତୁମ୍ଭେ ତେଜୋବାନ ଆଦିତ୍ୟ,
ମୁଁ ତ କ୍ଷୀଣ ଚନ୍ଦ୍ରମା,
ଲଭି ତବାଲୋକ ପ୍ରଭୁ ହେ;
ବଢ଼େ ମୋର ସୁଷମା ।

ତୁମ୍ଭେ ପୂର୍ଣ୍ଣ-ସୁଧା-ସିନ୍ଧୁ ହେ,
ମୁଁ ତ କ୍ଷୁଦ୍ର-ସରିତ,
ତୁମ୍ଭ ପାଦତଳ ଅଧୀନ
ଥିବା ମୋର ଜୀବିତ ।



# ଶେଫାଳି ପ୍ରତି

ଶେଫାଳି !

କେଉଁ ଦୂର ତରୁବରେ ଫୁଟିଅଛୁ ଗୋପନେ,
ଝୁରୁଝୁରୁ ଗନ୍ଧ ତୋର ଭାସି ଆସେ ପବନେ;
ବାତାୟନ ପାଶେ ବସି ଚାହେଁ ନବୋଦିତ ଶଶୀ
ହସି ହସି ସତେ ଉଇଁଆସେ ଦୂର ଗଗନେ,
ଭାବାବେଶେ ମୁଗ୍‌ଧ ମୁଁ କ ମଜ୍ଜିଅଛି ସ୍ୱପନେ !

ଭାବରାଜ୍ୟ ବୁଲେଁ ସତେ ହଜିଅଛି ଚେତନା,
ଅନ୍ତର ଅନନ୍ତ ରାଜ୍ୟ ପୂରିଅଛି କଳ୍ପନା;
ବଶାଳ ଏ ବିଶ୍ୱକ୍ଷେତ୍ରେ ଅର୍ଦ୍ଧ ନମୀଳିତ ନେତ୍ରେ
ଦେଖେଁ ସତେ ଶୋଭାରାଶି ପଡ଼ୁଅଛି ଉଚ୍ଛୁଳି,
ତହିଁ ସୁଧା ଢାଳୁ କରେ ଗନ୍ଧେ ଗଙ୍ଗଶିଉଳି ?

ଶାରଦ ଦନାନ୍ତେ ବସି ବାତାୟନ ପାଶରେ
ବୁଡ଼ିଅଛି ମନ ମୋର କବା ପ୍ରେମରସରେ;
ଆବେଶେ ପୁଲକେ ମୋର ନୟନରୁ ବହେ ଧାର,
ହୃଦତନ୍ତ୍ରୀ ବାଜଉଠେ କ ଅମୃତ ସୁସ୍ୱରେ,
ନମିଷେ ଭାବଇଁ ମୁଁ ତ ଅଛି କବା ସ୍ୱର୍ଗରେ !

ସାରାଦିନ ପରିଶ୍ରମ କ୍ଲେଶ କ୍ଲାନ୍ତ ଅଶେଷ,
ନାନା ଚିନ୍ତା ରୋଗ ଶୋକ କଷ୍ଟ ଦେଲ ବିଦେଶ;
ଯହୁଁ ରବି ଅସ୍ତାଚଳେ ଧୀରେ ଧୀରେ ଢଳିଗଲେ,
ସନ୍ଧ୍ୟାଗାଥା ଗାଇ ପକ୍ଷୀ ଫେରିଲେ ସ୍ୱସଦନେ,
ତମୋରାଶି ବୋଳିଦେଲ ଦିଶା ଧରା ଆନନେ ।

ନୀଳ ନଭ ମଣ୍ଡି ଧୀରେ ହସି ଫୁଲ୍ଲଲୋଚନେ
ଦେଖା ଦେଲେ ଶତ ଶତ ତାରା ଜ୍ୟୋତିବସନେ,
ଅଙ୍ଗେ ବୋଳି ସୁଧାରାଶି ଶଶୀଙ୍କ ଉଇଁଲ ଆସି,
ଝର ଝର ପଡ଼ିଲା କି ଭୁବନରେ ଅମୃତ,
ସତେ କି ଧରଣୀରାଣୀ ଦୁଃଖ ହେଲ ବିସ୍ମୃତ !

ଗତ ବରଷରେ ଧନ୍ୟ କାନ୍ଦିଥିଲ ମଉନେ
ଅନ୍ଧକାରେ ନତ ନେତ୍ର ବିଷାଦିତ ବଦନେ,
ସ୍ମୃତି କି ଆସିଲା ଉଇଁ ସୁନ୍ଦରୀ ଚୁମ୍ବିଲ ଭୂଇଁ
ହସିଲା କି ବସୁମତୀ ପିନ୍ଧି ଶୁଭ୍ର ଦୁକୂଳେ,
ଫୁଟିଲୁ ଶେଫାଳି ତନ୍ୱୀ ତୁ କି ପ୍ରେମ ଆକୁଳେ !

ଶେଫାଳି !

ମୃଦୁ ମୃଦୁ ଗନ୍ଧ ତୋର ଭାସିଆସେ ପବନେ,
ଛନ ଛନ ପ୍ରାଣ ମୋର କି ଆକୁଳ ଗୋପନେ !
ସତେ ମୋର ଦୁଃଖହରଣି କ୍ଷଣେ କାନ୍ଦି ଚଲ ଭାସି,
କେତେ କି କଳ୍ପନା ମନେ ଆସୁଅଛି ଭଜନେ,
କ୍ଷଣେ ପହଞ୍ଚିଲି ସତେ ଯାଇଁ ସ୍ୱର୍ଗଭୁବନେ !

ଶେଫାଳି !

କ୍ଷୁଦ୍ର ତୋର ତନୁ, ତହିଁ ଭରା ଏତେ ଅମୃତ,
ବିଧିଲୀଳା କେ ବୁଝିବ, ଜ୍ଞାନାତୀତ ଅଦ୍ଭୁତ !
ଗୋପନେ ଫୁଟିଛୁ ଦୂରେ    ତରୁପତ୍ର ଗହଳରେ,
ତଥାପି ତୋ ବାସେ ମୋର ପ୍ରାଣ ହୁଏ ଆକୁଳ,
କହ କେଉଁ ଶିଳ୍ପୀ ତୋତେ ଗଢ଼ିଅଛି ରେ ଫୁଲ !

କି କୋମଳ କି ଲଳିତ କି ମଧୁର ସୁରଭି,
କର୍କଶ କୁତ୍ସିତ ପଦେ ଶୋଭେ କିନ୍ତୁ ଅଟବୀ,
ବୃକ୍ଷ ପତ୍ରଶ୍ରେଣୀ କୋଣେ    ଫୁଲ ଫୁଟୁ ଏତେ ଗୁଣେ,
ଲୁଚି ଲୁଚି ବାସେ ତାର ମୁଗ୍ଧ କରୁ ସଂସାର,
ମାଟି ମଧ୍ୟେ ଉଚ୍ଚ ସୃଷ୍ଟି ବିଧାତାର ବିଚାର ।

ପଙ୍କେ ପଦ୍ମ ଗଢ଼ିଅଛି ବିଧାତା କି ଯତନେ,
ଶାମୁକା ଗରଭେ ନିହିଅଛି ମୁକ୍ତା ରତନେ,
କଳାମେଘ କଳେବରେ    ସୌଦାମିନୀ ଶୋଭା ଧରେ,
କଳା କୋକିଳ କଣ୍ଠରେ ପୂରିଅଛି ପୀୟୂଷ,
ତୁଚ୍ଛ ଭବେ ନୁହେ କିଛି, କ୍ଷୁଦ୍ର ତୋର ସଦୃଶ ।

ଶେଫାଳି !

ମନେ ମନେ ରୂପ ତୋର କଳ୍ପନାରେ ଆସେ କି,
ଭବ ଭବି କଥା ତୋର ଉଲ୍ଲାସରେ ଭସେ କି ?
ଏକ ରାତ୍ରି ପାଇଁ ଫୁଟି    ସୁବାସେ ଯାଉଛୁ ଲୋଟି,
କ୍ଷୁଦ୍ର ତୋର ଜୀବନରେ ସୁମଧୁର ବିକାଶ,
କ୍ଷୁଦ୍ର ବୋଲି ମୁହିଁ କିପାଁ ହୋଇବି ରେ ନିରାଶ ?

ଶେଫାଳି !

କ୍ଷୁଦ୍ର ମୁହିଁ ଯାନ ମୁହିଁ ରେଣୁକଣା ଜଗତେ,
ଗୁହିଁଲେ ବିଶାଳ ବିଶ୍ୱ ଆସୁଛି କି ପରତେ ?
କ୍ଷୁଦ୍ର ହେଲେ ସୁଧା ମୁହିଁ ଅକାରଣେ ଜନ୍ମି ନାହିଁ,
ଅନନ୍ତ ବିନାଶ ମୋର ଲେଖାନାହିଁ କପାଳେ,
ଏକ ରାତି ପାଇଁ ଫୁଟି ଝଡ଼ିଯିବ ସକାଳେ !

ଶେଫାଳି !

ନିତି ପ୍ରାତେ ଦେଖେଁ ପଡ଼ିଅଛୁ ତରୁମୂଳରେ,
ଝଲ ଝଲ ହିମବିନ୍ଦୁ ଶୋଭେ ଶୁଭ୍ର ଦଳରେ,
ସ୍ଫଟିକେ ପ୍ରବାଳ ପରି ଗଠିତ ତୋ ତନୁ ତୋରି,
ମନୋନ୍ମାଦକର ତହିଁ ପୂରିଅଛି ସୁବାସ,
କି କୋମଳ କି ଲଳିତ କି ମୋହନ ବିକାଶ !

କି ଯତନେ ଆହରି ମୁଁ ଗୁନ୍ଥେ ମାଳା ଆଦରେ,
ପୁଲକିତ ପ୍ରେମସ୍ପର୍ଶେ ଦୋଳାଏଁ ମୋ କଣ୍ଠରେ,
ଧୀରେ ପରଶି ଅଧରେ କେତେ ମୁଁ ତୋତେ ଆଦରେ
କି ବୁଝିବୁ ପ୍ରାଣହୀନ, ଆକୁଳତା ମୋହରେ,
କେତେ ପ୍ରେମ କରେ ତୋତେ ଗୋପନେ ମୋ ଅନ୍ତର ?

ଶେଫାଳି !

କହିବି ତୋ ଆଗରେ ସବୁ, ତୁ କି ବନ୍ଧୁ ଜୀବିତ ?
ହେଲେ ମୋ ହୃଦୟ ଶତ ବେଦନାରେ ବ୍ୟଥିତ,

ଆପଣା ମନେ ମୁଁ ଗାଏଁ ତୋତେ ଶୁଣାଇବା ଆଶେ,
ଶୁଣୁ କି ନ ଶୁଣୁ ଏକା ଜାଣୁ ତୁହି ସୁମନ,
ବୁଝୁ କି ନ ବୁଝୁ ମୋର ଶତ ପ୍ରୀତି-ବଚନ ।

କହି କହି କାନ୍ଦି ମୁହିଁ ଲଭେଁ ପ୍ରାଣେ ଆରାମ,
ତୋ ବୁଝିବା ନ ବୁଝିବା ମୋର ପକ୍ଷେ ସମାନ,
କମିଯିବ ଦବାଗ୍ନି, ପ୍ରାଣେ ତ ଲଭିବ ଶାନ୍ତି
ତୋ ଉଦ୍ଦେଶ୍ୟେ ଆରେ ଫୁଲ ମୋ ପ୍ରାଣର ଏ ବ୍ୟଥା,
ତୁ ନ ଶୁଣୁ, ଆଉ ଜଣେ ଶୁଣିବ ତ ମୋ କଥା ।

ଶେଫାଳି !

ମୋ ଜୀବନ ଶେଷ କାଳେ ପଡ଼ିବ ତ ମୁଁ ଝଡ଼ି,
ତୋଳିନେବ ନାହିଁ କି ସେ ମୋତେ ପରମ ଆଦରି ?
ମୋର ଆତ୍ମାଫୁଲ ତୁଳି ଚରଣେ ଦଳିବା ଠାରୁ
ତାର ପ୍ରିୟ ନିକେତନ ସଜାଇବ ନେଇ ସେ,
ତୋଷିବ ପ୍ରାଣଟି ମୋର କେତେ ପ୍ରେମ ଦେଇ ସେ ।

ଶେଫାଳି !

ତୋହ ପରି କ୍ଷୁଦ୍ର ମୁହିଁ, ତୋହ ପରି କ୍ଷଣିକ,
ହସେ ବାସେ ରସେ ମାତ୍ର ଫୁଟିଅଛୁ ଘଡ଼ିକ;
ମାଟିରେ ମିଶିବୁ ତୁହି, ମାଟିରେ ମିଶିବ ମୁହିଁ,
ତଥାପି ମୋ ଆତ୍ମାଫୁଲ ନ ଯିବ ରେ ମଉଳି,
ତେଣୁ ଆଶା ବାନ୍ଧି ହେଜ କାଟେଁ ଗଙ୍ଗଶିଉଳି !

ଶେଷ ଗନ୍ଧ ଲୁହେଁ ମୋର ମୃତ୍ୟୁ କେଉଁକାଳରେ,
ମରିବାକୁ ଫୁଟିନାହିଁ ଭବତରୁ ଡାଳରେ;
ଅଛୁ ରମ୍ୟ ଉପବନ          ଯହିଁ ଫୁଟି ଶରଦ୍ଦନ
ଅନନ୍ତ ଅମୃତ ପ୍ରେମ ସୁଧାମୟ ସୁବାସେ
ମୋହିବ ମୋ ପ୍ରାଣପ୍ରିୟ ଦେବତାଙ୍କୁ ଉଲ୍ଲାସେ ।

ଶେଫାଳି !

ମୃଣ୍ମୟ ଶରୀର ତୋର ଏତେ କ୍ଷୁଦ୍ର ଶୋଭନ୍ତ,
ନ ଜାଣେ ମୋ ଆତ୍ମାଫୁଲ କି ସୌନ୍ଦର୍ଯ୍ୟ ଶକତି,
ତୁ ଯଦି ମୋ ନେବେ ପ୍ରିୟ,          ତାଙ୍କ ନେତ୍ରେ ହେବ ହେୟ
ମୁଁ କି କେଉଁକାଳେ, ମୋର ନ ହୁଏ ତ ବିଶ୍ୱାସ ।
ଫୁଟିବି ମୁଁ ଶରଦ୍ଦିନ, ନ ହେବ ମୋ ବିନାଶ ।



# ମା'

ଆଜି ଏକ କଣ୍ଠେ ମା' ବୋଲି ଡାକ ହେ
ତେତିଶ କୋଟି ମାଆର ସନ୍ତାନ,

ମା' ନାମ ମନ୍ତ୍ରମା ଶକ୍ତିରେ ଉଠ
ଦୁର୍ବଳ ଖ୍ୟାତ କର୍ମମାନ,

ମା' ନାମ ଗରମା ଗିରି ହିମାଚଳେ
ଶତ ଶତାବ୍ଦୀର ତୁଷାର ଉଜ୍ଜ୍ୱଳେ

ମାତୃ ସ୍ନେହ ଝର
ଗଙ୍ଗା ସିନ୍ଧୁ ଧାର

ବ୍ରହ୍ମପୁତ୍ର ବହେ ପବିତ୍ର କଲ୍ଲୋଳେ,
ଉଠେ ମହାଗୀତ ବ୍ୟୋମେ ଜଳେ ସ୍ଥଳେ ।

ମା' ନାମର ସ୍ମୃତି ଅନ୍ତରେ ଉଚ୍ଛୁଳେ,
ବିନ୍ଧ୍ୟାଦ୍ରି ସହ୍ୟାଦ୍ରି ମଳୟଗିରି କୋଳେ
ରେବା ଗୋଦାବରୀ ଗାଆନ୍ତି ନିରୋଳେ ।

ଶିରୀ ବୃନ୍ଦାବନେ ଚନ୍ଦନ ବନେ ବଦ୍ରିକାସ୍ତୁଣେ
ମା' ନାମର ମନ୍ତ୍ର—
ବାଜେ ହୃଦ-ଯନ୍ତ୍ର ମଧୁର ନିକ୍ୱଣେ ।

କିଏ ସେ କୁମର, ଭେଦ ନାହିଁ ଯା'ର ହୃଦ ଅଭ୍ୟନ୍ତର
ମା' ନାମର ଭକ୍ତି ?

କିଏ ସେ ଦୁଷ୍କୃତୀ,
ମା' ନାମ ଶ୍ରବଣେ ନୁହେଁ ସେ ମୋହିତା ?

ଭାରତର କୁଳେ କିଏ କୁଳାଙ୍ଗାର,
ମା' ନାମେ ନୟନେ ନାହିଁ ଯାର ଧାର ?

ମା' ପରି ଆମର ତ୍ରିଲୋକ-ପାବନୀ
ଗାୟତ୍ରୀ, ସାବିତ୍ରୀ ବିଶ୍ୱ-ପ୍ରସବିନୀ,
ବେଦ ବେଦାନ୍ତର ଜନନୀ, ମୋକ୍ଷିଣୀ,

ନିଖିଳ ଅବନୀ ଜ୍ଞାନ ପ୍ରଦାୟିନୀ;
କାବ୍ୟ କଳା-ଶିଳ୍ପ ଲୀଳା ବିକାଶିନୀ,
କୋଟି କୁଞ୍ଜବନ-କୁସୁମ ମାଳିନୀ,
କୋଟି କଳ୍ପତରୁ-ବଲ୍ଲୀ-ରସାଳିନୀ,
ମନୋଜ୍ଞ-ମାନସ-ହେମ ମୃଣାଳିନୀ ।

ମା' ପରି ଆମର ଜ୍ଞାନ ବିଜ୍ଞାନର
ଆଦ୍ୟ ଲୀଳା ଭୂମି,
ପ୍ରଣବ ଓଁକାର ଝଙ୍କାର ଉଠିଲା ଯହିଁ ନଭଃ ଚୁମି ।

ବୁଡ଼ିଥିଲା ଯେବେ ବିଶ୍ୱ ଅବଶ ଅଜ୍ଞାନ ତମିରେ,
ଉଜ୍ଜ୍ୱଳ ଥିଲା କେ ବିଦ୍ୟାଧରମ ହେମ ଦୀପ୍ତିରେ ?

ଆଜ ହେଲ ତାର ସ୍ଥାନ ଅଧୋଗତ;
ଘୃଣ କି ତୁମର ନୁହଁଇ କରତ ?

ନାହିଁ କି ହେ ଉଷ୍ଣ ରକ୍ତ ଧମନୀରେ,
ବ୍ୟଥିତ ନୁହେଁ କି ମାତୃ ଆରତରେ ?

ଉଠ ଉଠ ତେବେ ଉଠ ମୋର ଭାଇ,
ଆର୍ଯ୍ୟତେଜଃ ତବ ରକ୍ତୁ ଯାଇ ନାହିଁ,

ମାତୃନାମ ମନ୍ତ୍ରେ
ଉଠ ହେ ଏକତ୍ରେ
ତେତିଶ କୋଟି ମାତୃ ସ୍ତବ ଗାଇ ।



# ପୁରୁଣା ଓଡ଼ିଆ

ଭଗ୍ନ କୁଟୀରେ ହେ କୃଷକ ଭାଇ
ଅର୍ଦ୍ଧ ମୃତ ତୋର ପରିବାର,
ନିତ କ୍ଳାନ୍ତ ନିତ ଖଟଣି ସାର ତୋ;
ନ ମିଳଇ ପୂର୍ଣ୍ଣ ଆହାର ।

ନଈ ବଢ଼ି ପାଣି ଧୋଇ ଦେଲା ତୋର
ଶସ୍ୟ କର୍ଷିତ କେଦାର,
ନଗର ନିବାସୀ ନ ବୁଝିଲେ କେହି;
ଲୁଟି ନେଲେ ତୋର ଭଣ୍ଡାର ।

ଦିନ-ଖରା ରାତି-କାକର ସହି ତୁ
ଖଟିଲେ କେତେ କାମ କରିବୁ;
ମହାଜନ ଦାଉ ଟିକସ ଜ୍ୱାଳାରେ
ନିତ ନିତ ଆପୁ ସରିବୁ ।

ଦୀର୍ଘ ହତାଶ ନିଃଶ୍ୱାସ ତୋର
ଆଉ ନ ମିଶିବ ମାଟିରେ;
ଦେଢ଼ କୋଟି ଆଜ ଉଠିବେ ଓଡ଼ିଆ
ଜଡ଼ତାର ମୋହ କାଟିରେ ।

(ଗ)

ହେ ଦୀନ ଶିଳ୍ପୀ ! କୁଟୀରେ ତୁମର
ଅସ୍ତ ପଡ଼ୁଛୁ ଅଳସେ;
ବିଦେଶୀ ବିଳାସ ବ୍ୟସନେ ସାରିଲୁଁ
ଧନ ଆମେ ବୃଥା ରଭସେ ।

ନ ସ୍ମରିଲୁ ତୋର ପୂର୍ବର ଗୌରବ;
ନ ଗୁହ୍ନିଁଲୁ ଦୀନ ଦଶା;
ଆପଣା ଚରଣେ ହାଣିଲୁ କୁଠାର,
ଜଗତେ କି ଲୋକ ହସା ।

ଭସ୍ମ ନାହିଁ ଭାଇ ଜାଗିଲଣି ଏବେ
ପୁରୁଣା ଓଡ଼ିଆ ପ୍ରାଣ,
ଶିଳ୍ପ ଶିକ୍ଷା କ୍ଷେତ୍ର ମହାର୍ଘ ବିଭବ
ମଧୁର ରଟନା ଟାଣ ।

ଗୃହା ବଗିଚ୍ଛର କୁଳଗିର ଆଜ
ନ ଡାକବ ଆମ ସୂତେ,
ଆପଣା ଗୋଡ଼ରେ ଛିଡ଼ା ହେବେ ସେହ୍ବ,
ଉଚ୍ଚ ହେବେ ନଜ କୃତେ ।

ନଜ ହାତେ ନଜେ ହେବେ ସେ ମଣିଷ,
ନ ଗୁହ୍ନିଁବେ ପର ଦୁଆରେ;
ମୁକ୍ତ-ତରଣୀ ଭାସିବ ଏଥର
ଉନ୍ନତର ପାରବାରେ ।

## (ଗ)

ହେ ବୀର ବନ୍ଦ ! କାରାଗାର କୋଣେ
କଳଙ୍କିତ ତବ ଅସି,
(ଏବେ) ଝଳେ ନବ ଜ୍ୟୋତିଃ ଅୟସ ଫଳକେ
ଲିଭି ଯାଇଅଛୁ ମସି ।

କିଏ ହସି ହସି ଦେବ ପ୍ରାଣ ବଳି,
ବିଶ୍ୱ ଡାକୁଛି କାହାକୁ ?
କିଏ କାନ୍ଦି କାନ୍ଦି ଗାଇବ ଗୀତଟି,
ଆଗୁଁସାର ସବୁ ଦେବାକୁ ?

କିଏ ବାନ୍ଧି ନେବ ଛିନ୍ନ ପତାକା;
ଉଠାଇବ ବୀର-କେତନ ?
ଆସ ଅଗ୍ରେ ଆସ ତରୁଣ ତପସ୍ୱି !
କୋଟି କଣ୍ଠ ଡାକେ ସଘନ ।



# ଭାରତ ରମଣୀ

ସଫଳ ଜନମ, ସଫଳ ଜୀବନ,
ମୁଁ ପରା ଭାରତ-ରମଣୀ,
ମୋ ତ୍ୟାଗ ପୁଣ୍ୟ ସହିଷ୍ଣୁତା ଗୁଣେ
ମୋହିତ ନିଖିଳ ଧରଣୀ ।

ନାରୀତ୍ୱର ପୂଜା, ନାରୀତ୍ୱେ ଆଦର
ଲଭି ଶ୍ରେଷ୍ଠାସନ ଜାୟା ଜନନୀର,
ବଧୂ ବିଧାନେ ମୁଁ ଶକତି, ସାବିତ୍ରୀ,
ମୁଁ ଶାରଦା, ଲକ୍ଷ୍ମୀ ରୂପିଣୀ ।

ପ୍ରବୃତ୍ତି ନୁହେଁ ମୋ' ନିବୃତ୍ତି ପନ୍ଥା,
ସଂଯମ, ଶାନ୍ତ ଜୀବନେ ଗୁନ୍ଥା,
ବୈଧବ୍ୟ ବସନେ ! ଚିତାର ଦହନେ;
ମୂର୍ତ୍ତିମନ୍ତ ଧର୍ମ ଧାରଣୀ ।

ଆତ୍ମ ଶକ୍ତି ଲୀଳା ନର କଳେବରେ
ଉଠିବ ବିଶ୍ୱ, କଟାକ୍ଷ ମାତରେ;
ମୁଁ ତ ଆଦ୍ୟାଶକ୍ତି
ଭକତ ଆରତ ଅନ୍ତିମ ମୁକ୍ତି ସରଣୀ ।



# ଅଭିଶପ୍ତର ଅଭିମାନ

(୧)

ଜାଣେ ଏ ଜୀବନ କେବେଁ ନ ହେବ ସଫଳ,
ଅକାରଣ ନୁହେଁ ମୋର ଉଷ୍ଣ ଅଶ୍ରୁଜଳ ;
ନଶ୍ୱର ବସ୍ତୁର ଘନ ଗହନ ଅନ୍ଧାରେ
ନ ମରିବ ଚିରଦିନ ତୀବ୍ର ହାହାକାରେ ।
ଅମୀୟ ଅରୁଣ ଭାତି
ବିନାଶିବ ଚିର ରାତି,
ଅମୃତ ଆନନ୍ଦେ ମୁହିଁ ଅନନ୍ତ ଜୀବନେ
ଜାଗିବ ଜାଗିବ, ଧ୍ରୁବ ଆଶା ମୋର ମନେ ।

(୨)

ଦୁର୍ବଳ କୋମଳ ମୁହିଁ ମଳିନ ଅଧମ,
କୋଟି କର୍ତ୍ତବ୍ୟ ପାଳନେ ସତତ ଅକ୍ଷମ,
ଶତ ଶତ ଭୁଲ ଭ୍ରାନ୍ତି,
ଦାରୁଣ ଦୂଷଣ ଶ୍ରାନ୍ତି,
ଦେଇଛି ଜୀବନ ମୋର ସହସ୍ର ଜଞ୍ଜାଳ,
ତଥାପି ନୁହେଁ ମୁଁ ସଖା ମୃତ୍ତିକା କଙ୍କାଳ ;
ଅମୃତ ସନ୍ତାନ ମୁହିଁ ସୁଧା ଅଧିକାରୀ,
ଅନନ୍ତ ତିମିର ତଳେ ଧ୍ରୁବ ଗୁପ୍ତଧାରା ।

(୩)

ଲାଞ୍ଛନା ଗଞ୍ଜନା ଶତ ଭର୍ତ୍ସନା ଜୀବନେ,
ପଦେ ପଦେ ଅପମାନ ପୀଡ଼ଇ ମରମେ,
ତୀକ୍ଷ୍ଣ ଶେଲ ଶିଳା ଅବା କଠିନ କୁଳିଶ-
ପ୍ରହାରେ ଜର୍ଜର ହୁଆ, ଜୀବନ ମୋ ବଷ;
ତଥାପି ଅମର ମୁହିଁ ମାନବ ସନ୍ତାନ,
ବ୍ୟର୍ଥେ ଏ ପୃଥିବୀ ମୋତେ ନ କଲା ଆହ୍ବାନ ।

ତଳେ ତଳେ ଏ ଜୀବନ
କରିବଣି ନିବେଦନ,
ସାରସୃଷ୍ଟି ସାର ମୁହିଁ ପ୍ରଚ୍ଛନ୍ନ ଦେବତା,
କରମକରତା ମୁହିଁ ମୋ ଭାଗ୍ୟନିୟନ୍ତା ।

(୪)

କରୁଛ କି ପରିହାସ ଦେଖି ହୀନ ବେଶ,
ଅର୍ଦ୍ଧ ଅନଶନେ କ୍ଷୁଦ୍ର କୁଟୀରେ ମୋ କ୍ଲେଶ ?
ତପତତପନ ତଳେ ତନ୍ତ୍ର ସ୍ୱେଦଜଳେ
ରୁକ୍ଷ ବକ୍ଷଧରା ମୁହିଁ ଚଷଇ ଲଙ୍ଗଳେ;

ଅବା ଭିକ୍ଷା ପାତ୍ର ଧରି
ଘରମେ ମରମେ ସରି

ତବ ରମ୍ୟ ହର୍ମ୍ୟ ତୋରା ତୋରଣ ସମ୍ମୁଖେ
କାଳ ପଦକ୍ଷେପ ଆସେ, ନ ବୁଝୁଛ ମୁଖେ ।

(୫)

ଲଭେ ତୋତି ମଥା ଦୂରେ ଯାଅ ମୋର ଭାଇ,
ନ ଚାହଁ ନ ଚାହଁ ମୋତେ ନ ହେବ କଥାଇ ।
ତଳେ ତଳେ ପ୍ରାଣ ମୋର କରିବ ଅର୍ପଣ
ତବ ଶତ ସୁଖ ଯହିଁ ହେବଟି ବର୍ଦ୍ଧନ ।
ବଞ୍ଚିବାର ଅଧିକାର ରଖ ଚିରଦିନ,
ମରଣେ ସମ୍ବଳ କରି ହେଉଥାଏଁ କ୍ଷୀଣ ।

ତଥାପି ମରିବ ନାହିଁ,
ମନେରଖ ଏହା ଭାଇ,

ଏକାରଣେ ଜନ୍ମ ମୋର ନ ହେଲା ଭୂତଳେ,
ଅନନ୍ତ ବିନାଶ ଯେନ ମରିବ ବିରଳେ ।

ଅନନ୍ତ ବିକାଶ ମମ
ଚିରଦିନ ଅନୁପମ,

କଷଣ-କର୍ଦ୍ଦମେ ପଦ୍ମ ମୂର୍ତ୍ତି ଶତଦଳ,
ନ ହେବ ବିଫଳ ମୋର ତପ୍ତ ନେତ୍ରଜଳ ।

(୬)

ପାଷାଣେ ପିଣ୍ଡିତ ଭାଗ୍ୟ ବର୍ତ୍ତିଛି ସଖା,
ପାଷାଣ ପ୍ରାଣରେ ତେଣୁ ନ ପଶଇ ଦେଖା ।
ଉଚ୍ଚାସନେ ଦୃଢ଼ମନେ ଆରାମ ଶୟନେ
ବସୁଛ ଦେବଜନନି, କାନ୍ଦେ ମୁଁ ଅପ୍ଣନେ ।

ମୋ' ରକ୍ତ ତପତ ଧାରେ,
ମୋର ନୂର ହାହାକାରେ

ବୃଦ୍ଧ ରହୁଅଛୁ ତବ ଜୀବନସମ୍ପଦ,
ନ ମିଳେ ମୁକତି ମୋତେ ଧ୍ୟାଇଣ ଶ୍ରୀପଦ ।

ତୁମେ ବୀର ତୁମେ ଗୁଣୀ,
ମୁଁ ହୀନ ଅଜ୍ଞାନ ଋଣୀ,

ତୁମରି ସଭ୍ୟତା ଘାତେ ତୁମରି ଆଲୋକେ,
ତୁମ ହନା ବାସ ମୋର ଅନନ୍ତ ନରକେ ।

ନ ହେବ ନ ହେବ ଭାଇ,
କେହି କେବେ ଶୁଣି ନାହିଁ

ନିଷ୍ଠୁର ପୀଡ଼ନ ଦାଉ ଦେ'ଣା ଗୋଟି ଗୋଟି,
ଥାଅ ସୁଖେ, ଭୋଗେ ମୁହିଁ କଷ୍ଟ କୋଟି କୋଟି ।

(୭)

ସ୍ୱର୍ଗ ଦୁର୍ଗମ ଯଦ୍ୟପି ଏ ଜନ ବିପିନ,
କଣ୍ଟକ ପରଶେ ହାସେ କାନ୍ଦ ତନୁ କ୍ଷୀଣ,

ସରିବ ସରିବ ମୋର ଅଜ୍ଞାତ ନିବାସ,
ନିଜ ତେଜେ ଦିନେ ମୁହିଁ ହେବି ସ୍ୱପ୍ରକାଶ ।

ହେ 'କରେ' ମୁଖରେ ହର ଦ୍ରୌପଦୀ ବସନ,
ସେ କର ଭଞ୍ଜନେ ଲଜ୍ଜା ହେବ ନିବାରଣ ।

ରଞ୍ଜାଇବ କେଶରାଶି
ରକତେ ଆନନ୍ଦେ ଭାସି,

'ଭୀମ ଭୁଜେ ବନ୍ଧାଇବ; ଦର୍ପୀ ଦୁଃଶାସନ
ବୃକୋଦର ଗଦାଘାତେ ତେଜିବ ଜୀବନ ।

(୮)

ଲଙ୍କା ନଗରରେ ବନ୍ଦୀ ଜନକନନ୍ଦିନୀ,
'ଦଶଆନନ ଦଳନେ କାନ୍ଦଇ ଉନ୍ମାଦିନୀ—
କହନ୍ତି କେବାର ସୀତା ସରମ-ଆକୁଳା,
ଉତ୍ଥିତ ଗୋପନ ଗର୍ଭେ ଶଙ୍କାର କୁହୁଳା,

ଜଳିବ ସେ ଦାଉ ଦାଉ,
ଭସମିବ ଗୃହ ଗୃହ,

କନକ-କମଳ-କାନ୍ତ ଲଙ୍କା ଭବଶଙ୍କା,
ଅହଙ୍କାର ଅରି ଶିର ପାଦେ ହେବ ବଙ୍କା ।

ଧୈର୍ଯ୍ୟ ସର୍ବସ୍ତୁତା ସତ୍ୟ ଶ୍ରୀରାମ-ଜାନକୀ-
ଲକ୍ଷ୍ମଣ ବଜାଇ ବାନା ଉଡ଼ିବ ଝଟକି !

ଯୁଗ ଯୁଗାନ୍ତର ଯଶ ଗାଇବ ଗଗନ—
ଚନ୍ଦନ ସାଗର ଶୋଭା ବିଶାଳ ଭୁବନ ।

(୯)

ସ୍ୱପ୍ନ ଚପଳେ ଯିବ ତାପର ତପସ୍ୟା,
କାନ୍ଦିବ କରୁଣେ ଗୌରୀ ଗିରିଜା ବିବଶା;
ଶିବ ପତି ନ ଲଭି ସେ, ଅସତୀ ବୋଲାଇ
ସତୀରୂପେ ବୃଥା ପିତୃଗୃହେ ମରି ନାହିଁ ।
ମହାଯତିଯୋଗ ଭଙ୍ଗ
କରିବ ଦେବ ଅନଙ୍ଗ,
ନେତ୍ରାନଳେ କଳେବର ଯଦି ବା ଦହିବ,
ଚରଣପଦ୍ମାରେ ନତ ମନ ସେ ବାଞ୍ଛିବ ।

(୧୦)

ଅକାରଣେ ପାଷାଣ ଯେ ଅହଲ୍ୟା ସୁନ୍ଦରୀ,
ଅରପିବେ ଶିରେ ପଦ୍ମ ଶ୍ରୀପାଦ ଶ୍ରୀହରି ।
କହିଁ କଳଙ୍କିନୀ ରାଧା ହେବ ଗୋପକୁଳେ,
ମୋହନ ମୁରଲୀ ତାନେ କଦମ୍ବର ମୂଳେ
ଗୁରୁ ପିତୃ ପରିଜନ
ଧାଇଁ ଉନ୍ମାଦିନୀ ସମ
ଅନନ୍ତ ଅଶ୍ରୁ ସାଗରେ ବୁଡ଼ିବ କି ଚିର,
ନ ଭାବିବ ତିଳାକାଣେ ବ୍ରଜର ମିହିର ?
କପଟ କପଟ ଶ୍ୟାମ
ଭୁଲିଲେ ରାଧାର ନାମ
ବଜାଇ ଝୁରିବେ ପରା ଦିବସ ଯାମିନୀ,
ଯମୁନାର ନୀର ଯେବେ ଚୁମ୍ବିବ ଚନ୍ଦ୍ରିମା ;

(୧୧)

ମିଛେ କି କୋକିଳ କେବେ ଡାକେ କଳଗିର
ନ ବହିଲେ ମୃଦୁ ମଧୁ ମଳୟ ସମୀର ?
ମିଛେ କି କୁମୁଦ-ଆଶି
ଇନ୍ଦୁ ପାଦେ ରହେ ଲାଗି,
ଶତ ବର୍ଷେ ସର୍ମ୍ପ ସେ ନ କଲେ ଚୁମ୍ବନ,
ଶୀତଳ ଶିଶିର ଛଳେ ସ୍ନେହ ଆଲିଙ୍ଗନ ?
ନୀରବ ରଜନୀ ଧୀର ଗମ୍ଭୀର ସୁସ୍ୱରେ
ଝିଲ୍ଲୀରବେ ଆଶାଗୀତ ଗାଏ ଶ୍ରାବଣରେ ।
ଅନନ୍ତ ଅବ୍ୟକ୍ତ ଶାନ୍ତ ପୁରେ ତ ପରାଣେ,
ମିଛେ କି ଜୀବନ ରହେ ଆନର ଧିଆନେ ?

( ୧୨ )

ଅକାରଣେ କ୍ରୌଞ୍ଚପକ୍ଷୀ ନ ତେଜିବ ଜୀବ,
ରାମାୟଣ ପଣା ପରା ପୃଥିବୀ ପିଇବ,
କବି କୁଳଗୁରୁ ହେବେ ସ୍ୱୈର ରତ୍ନାକର ;
ବୋଲାଇବେ ବାଲ୍ମୀକି ମହର୍ଷିପ୍ରବର ,
ଅକାରଣେ ବନବାସେ ନ ଯିବ ଜାନକୀ,
ସତୀଙ୍କ ଗୌରବ ପରା ଉଠିବ ମହକି !
ପାଇ ପୁତ୍ର ଅଧିକାର
ରଘୁନାଥ ନେତ୍ରଧାର
ପୋଛୁ ଲବକୁଶ ଯୁଗ ଧନ୍ୟ ହେବେ ଭବେ,
ଅକାରଣେ କ୍ରୌଞ୍ଚୀ ଶୋକ ନ କଲା ବୈଧବ୍ୟ ।

(୧୩)

ସ୍ୱର୍ଗ ଖଣ୍ଡୁ ଖସି ଭୂତଳେ ଦଳ୍ପିତ ତରପେ,
ଅଯତ୍ନେ, ସ୍ଥାନ, ଭଗ୍ନେ ପଦ୍ମଣ ଅରଣ୍ୟେ ;
ଶରଦଳ ସମଭୂଲ ନ ଥିବ ତୁମର,
କେବେ ତୁମେ ତଳେ, କେବେ ହେବ ମୁଁ ଉପର;
ତୁମର କଣ୍ଟକ ମୋର ହେବ ଶିରଶୋଭା,
ମୋହର ମୋହନୀ ଦନେ ହେବ ମନଲୋଭା ।

ଆଜ ଯା'ରେ ପଦାଘାତ,
କାଲ ତା'ର ଧର ହାତ

ଆଦରେ ଅଞ୍ଜଳନଧି ଅଙ୍କ ଆସନରେ
ରଖିବ ରତନ ସମ ସ୍ନେହ ଯତନରେ ।

(୧୪)

ବଳ ! ଦେବତଳା ତବ ସନ୍ଧ୍ୟ ମରବେ,
ଗୋଟିଏ କଥା ମୋ' ମୁଖେ ନ ଶୁଣିବ ଭବେ ;
ତଥାପି ନିଃଶ୍ୱାସ ମୋର ଫଟାଇ ପାଷାଣ
କରବ ବଦାର୍ଣ୍ଣ ତବ ଅହଂକାରୀ ପ୍ରାଣ ।
ଆଜ ଯାକୁ ତୃଣ ସମ କର ତୁଚ୍ଛ ହେୟ,
କାଲ ସେହ ହେବ ତବ ଶ୍ରେୟ ତବ ପ୍ରେୟ ;
ଆଜ ଯେ ତୁମର ବନ୍ଦୀ କଠିନ ଶୃଙ୍ଖଳେ,
କାଲ ପୂଜାଫୁଲ ଦେବ ତା'ର ପାଦତଳେ ।

ଆଜ ତୁମେ ଯାର ସଙ୍ଗ,
କାଲି ତବ ପ୍ରେମବାହୁ
କରି ଆଲିଙ୍ଗନ ତା'କୁ ଦେବ ଦେବାସନ,
ତା' ଗୁଡ଼ା ମୋହିବ ତବ ମୂଢ଼ ଅନ୍ଧ ମନ ।

(୧୫)

ଅସ୍ପୃଶ୍ୟ ଇତର ମୂର୍ଖ ସୃଣିତ ଚଣ୍ଡାଳ,
କରିଛ ପରସ୍ପର ତବ ନରକ ଜଞ୍ଜାଳ;
କାନ୍ଦେ ବନ୍ଧନଏଁ ବୋଲି ପ୍ରଶିର ଝରରେ
"ବେଦେବ, ବେଦେବ" ଡାକ ଶୁଣାଅ ଶ୍ରଦ୍ଧାରେ ।
ମୁର୍ଖି ପଦସେବାକାରୀ
ଭୃତ୍ୟ, ପୂଜାରୀ, ଉଣ୍ଡାରୀ,
ବୋଲଉଛ ବାବୁ ବସି ଉଚ୍ଚ ଆସନରେ,
ନିଜ ଲୁଗୁଅ କଳୁ ମୋ ଦତ୍ତ ବସନରେ ;
ମୋ ଦତ୍ତ ଅଶନ ପୁଣି କରୁଛ ଭୋଜନ,
ତୁଙ୍ଗ ପ୍ରାସାଦରେ ତୁମେ, ତଳେ ମୋ ବେଦନ ।

(୧୬)

ଅଗାଧ ଐଶ୍ୱର୍ଯ୍ୟ ତବ, ମୁଁ ହୀନ ମୁଲିଆ,
ତୁମେ ଶୁଭ୍ର ସିଂହାସନେ, ମୁଁ ପାଦତଳିଆ ;
ମୋ ରକ୍ତ-ସିକ୍ତ ମନ୍ଦି ଦରପ-ମନ୍ଦରେ
ଦୁଇଦନ ହସୁଥାଅ ଭାସି ଅମୃତରେ ।

ଶ୍ରେରଇ ଚନ୍ଦ୍ର ମାଣିଗ ବୋଲଅ ଦେବତା,
ହୁଏଁ ମୁଁ ଲଜ୍ଜିତା ଶର ପଦଅବନତା ।
ଉଠିବ ଉଠିବ ଭାସି
କରାଳ ଗରଳରାଶି,
ନୀଳକଣ୍ଠ ଲେଡ଼ା ତହିଁ ହୋଇବ ଭୁମ୍ବର,
ବେଳହୁଁ ଦୁର୍ବାର ତବ ବାସନା ସମ୍ବର ;
ନୋହିଲେ ଭୀଷଣ ରଣ ସୁରାସୁରଗଣେ
ରଚିବ ଶ୍ମଶାନ ତବ ମନ୍ଦାର-ନନ୍ଦନେ ।

(୧୭)

କର୍ଣ୍ଣ ବାହୁବଳେ ଆଜି ତେଜା ଦୁର୍ଯ୍ୟୋଧନ
କୃଷ୍ଣାର୍ଜ୍ଜୁନେ ଦେଖୁ ଜ୍ଞାନ କରେ ତୃଣ ସମ,
ନ ଭାବୁଛ ମନେ ଅଛି 'ଆଞ୍ଜଳିକ' ଶର,
ଅଭିମନ୍ୟୁ ବଧ ଶୋଧ ଲଭିବ ନକର ।
ଜତୁସଦନ ଦହନ !
ଭୀମ ଗଦାରେ ଭଗନ—
ହେବ ସେ ଗର୍ବିତ ଜାନୁ, ତେଜିବ ଜୀବନ,
ଅନ୍ୟାୟ-ଆହବେ ପରା ବଳାଇଛ ମନ !

(୧୮)

ଚିରଦିନ ଚନ୍ଦ୍ର କା'ର ନ ଉଦେ ଆକାଶେ,
ଚିରଦିନ ନ ଘଟେ କେ ସମ୍ପଦ ବିଳାସେ ;
ଚିର ପରାଜିତ ନୁହେଁ ନ୍ୟାୟ ଯୁଧିଷ୍ଠିର,
ଚିର ମନ୍ତ୍ରେ ନ ଲୁଚିବ [illegible] ଶକୁନିର ।

ଥାଉ ତବ ପକ୍ଷେ ଲକ୍ଷ ନାରାୟଣୀ ସେନା,
ଏକା ନାରାୟଣ ମୋର ରକ୍ଷା ବଜ୍ର-ବେଢ଼ା ;

ଥାଆନ୍ତୁ ସହସ୍ର ରଥୀ,
ଏକା ମୋ ରଥ ସାରଥୀ

ନିରସ୍ତ୍ର ନିର୍ଦ୍ଦ୍ୱନ୍ଦ୍ୱ କୃଷ୍ଣ ଷୁଦ୍ର ବଂଶୀଧାରୀ,
ଗୀତା ଗାନେ ପ୍ରାଣେ ମୋର ବର୍ଷ ଶାନ୍ତିବାରି ।

( ୧୯ )

ଜଳ ମୋ ମୂର୍ଚ୍ଛିତ ମୁଖେ ଦିଅ କରତାଳି,
ମରେଁ ମୁଁ ଦରିଦ୍ର ଷୋଭେ ଶତ୍ରେ ଶତା ଜାଳି ;

ନାହିଁ ମୋର ବାସ, ଅଛୁ ମହାକାଶ ତଳେ,
ନାହିଁ ମୋର ହେମଶଯ୍ୟା, ଶୁଏଁ ମୁଁ ଭୂତଳେ ;

ଶୀତ ଖର ବରଷାରେ
ପ୍ରକୃତିର ଅତ୍ୟାଚାରେ

ଷୀଣ ଅଙ୍ଗଶିଖା ସିର ଆୟୁ ଯାଏ ହରି,
ତଥାପି ବଞ୍ଚିବି ନିଶ୍ଚେ ଏ ବିପଦେ ମରି ।

ମରଣ ନୁହେ ମୋ କ୍ଳେଶ,
ନୁହେ ତା ବିନାଶ, ଶେଷ,

ଅଦ୍ଭୁତ ସୁନ୍ଦର ନବ ଜୀବନ ଆରମ୍ଭ,
ମୋ ମରଣେ କିନ୍ତୁ ତବ ଜୀବ କି ସମ୍ଭବ ?

( ୨୦ )

ଧମ୍ବଳସ୍ଥାନର ଶେଷ ଆଶାର ସମ୍ବଳ
କାଢ଼ିନେଲ ଶୀତେ ଯଥା ଶୀତାର୍ତ୍ତ-କମ୍ବଳ;

ଭାବିଲ ମହତ ଏକ କରମ ସାଧିଲି,
ବୈରଭାବେ ସ୍ଥାନ ଅରି ଜୀବନ ବଧିଲି,

କିନ୍ତୁ 'ରକ୍ତବୀଜ' କେବେ ମରି ସେ ନ ମରେ,
ଶତ ଶତ ଦୈତ୍ୟ ଜାତ ବିନ୍ଦୁଏ ରକ୍ତରେ ।

ଖଡ଼ଗ ହସ୍ତେ ହାଣି ଶିର
ବୁହାଇଲ ଯେ ରୁଧିର,

ନିନ୍ଦୁ ପିନ୍ଧୁ ହୋଇ ଶେଷେ ବୁଡ଼ିବ ଆପଣ,
ନେଉଛ ତ ପ୍ରତିଫଳ କୃପାରେ କୃପଣ ।

( ୨୧ )

ପଡ଼େ ଦଳି ଫୁଲ ଗୋଟି ହେଲ କି ଗୌରବ,
ମଥିତ ବ୍ୟଥିତ ତା'ର ଫୁରିଲ ସୌରଭ ;

ମରି ସେ ମରିଲା ନାହିଁ,
ହଜାଇଲ କାହିଁପାଇଁ

ତାର ଶୋଭଶିଖା ହାସ ଅକାଳେ ହେଳାରେ,
କିଏ ଜିତେ କିଏ ହାରେ ବୁଝି ଏ ଖେଳାରେ ।

ନିଜର ଆନନ୍ଦ-ଧନ ସାରିଲ ଭୁଞ୍ଜାଲୁ,
ନିଜ ହସ୍ତେ ଜିହ୍ୱା ଛେଦ କରିବ କାହାକୁ ?

( ୨୨ )

ଭାବିଲୁ ବୁଡ଼ିବ ପଣ୍ଟ କଦଳୀ ଭେଳାରେ,
ଅନନ୍ତ ଅମ୍ବୁଧି ତଳେ ଗୃହ୍ଣିବ ଗେହ୍ଲାରେ ;

ଆଦରେ ମରଣ ମୋର, ନଷ୍ଠୁର କାଣ୍ଡାର !
ଘନ ପ୍ରଭଞ୍ଜନେ ଜର୍ମ ସାଗର ଝଙ୍କାର ।

ସହସା ଅଚଳେ କୂଳ
ଲଭି ମୋ ଭରସା ଠୂଳ

ହେଲଣି ଅଭୟ ପାଦେ, ଦୟାର ଠାକୁର
ଶୁଣିଲେଣି କାକୁ ମୋର, ଶୁଣ ଶୁଣ ଝୁର !

( ୨୩ )

ପଦ୍ମ ମହାଭାରତର ମହାସିନ୍ଧୁ ଜଳେ
ବୁଡ଼ି ମୁଁ ଚିତ୍କାରେ କାନ୍ଦେ କୃପା ପାଦତଳେ,

ତୋଳିନେବେ ବସ୍ତ୍ରାଣ ସେ ପ୍ରେମମହାବାହୁ
ଗରୁଡ଼-ଶେଖରାସନ ଦେବେ ଗୃହ୍ଁ ଗୃହ୍ଁ ।

ଉର୍ଦ୍ଧ୍ୱ ମାନ-ସରୋବର-କମଳ-ବିଳାସୀ
ମରାଳର କଳଗାନେ ମାନସଉଲ୍ଲାସୀ,

ହେବ ହୈମବନ୍ତୀ ସଙ୍ଗୀ ତ୍ରିଲୋକପାବନୀ,
ଅକାରଣେ ଏ ପ୍ରଳାପ କରେ ପାଗଳିନୀ ।

( ୨୪ )

ବିଶ୍ୱାସ ତାହାର ବିଶ୍ୱରାଜ୍ୟ ବିଧାତାର,
ଚିର ନ ବର୍ତ୍ତିବ ତହିଁ କ୍ରୂର ଅତ୍ୟାଚାର ;

ଯେ ହୀନବିଶ୍ୱାସୀ କର୍ମେ ନେଇ ସେ ପରଖି,
ଏତିକ ମାଗୁଣି ମୋର ଅନାଥ ଅରକ୍ଷୀ ।



Printer :-Radharani Printers, Cuttack- 1982-1000 Copies